# ଅନେକ ସ୍ୱପ୍ନ

ଶ୍ରୀମତୀ କୁମୁଦଲତା ମହାନ୍ତି (ସ୍ୱୟଂପ୍ରଭା)

**ପ୍ରକାଶକ :**
ସ୍ମୃତିରଞ୍ଜନ ମହାନ୍ତି

**ପ୍ରଥମ ମୁଦ୍ରଣ :**
୨୦୦୧ (ସରସ୍ୱତୀ ପୂଜା)

**ମୁଦ୍ରଣ :**
ବିବରଣୀ ପ୍ରକାଶନୀ
ଟଙ୍କପାଣି ରୋଡ଼, ଭୁବନେଶ୍ୱର - ୨

**ପ୍ରଚ୍ଛଦ :**
ଅସୀମ ବସୁ

**ମୂଲ୍ୟ :**
ସାଧାରଣ ବନ୍ଧେଇ ୨୫ ଟଙ୍କା ମାତ୍ର
ବୋର୍ଡ ବନ୍ଧେଇ ଦଶଟଙ୍କା ଅଧିକ

**ଯୋଗାଯୋଗ :**
ଘର ନଂ. ଡି/୧୪୮, ଏଚ୍.ଏ.ଏଲ୍.
ସୁନାବେଡ଼ା-୨, କୋରାପୁଟ
ଫୋନ୍ : (୦୬୮୫୩) ୨୦୪୭୭

## କାହାଣୀ :





## ଶ୍ରୀହରି ଶରଣଂ

ସଂପ୍ରତି ସାମାଜିକ ଘଟଣା ଚକ୍ରରୁ ଏବଂ ପରିକଳ୍ପନାର ପରିଧି ଭିତରୁ ଜନ୍ମ ନେଇଥିବା ଏହି କାହାଣୀଗୁଡ଼ିକ 'ଅନେକ ସ୍ୱପ୍ନ' ନାମରେ ପ୍ରକାଶିତ ।

ଆଜି ମୁଁ ଏହି ଗଳ୍ପ ସଙ୍କଳନଟିକୁ ମୋର ବନ୍ଧୁ ଓ ଆତ୍ମୀୟମାନଙ୍କ ହାତରେ ଅର୍ପଣ କରୁଛି ।

ଜୟ ଶ୍ରୀଜଗନ୍ନାଥ । ଇତି ।

**ବିନମ୍ରା ଲେଖିକା**

# ନିଳିମା

ଫୋନ୍ ରିସିଭର୍‌ଟି ଉଠାଇ ଶତ୍ରୁଘ୍ନ ଆଶ୍ଚର୍ଯ୍ୟ ହେଲେ । କିଏ ଜଣେ ସେପଟୁ କହୁଛି "ଆପଣଙ୍କ ଝିଅ ପାଖକୁ କୌଣସି ଯୁବକ ଫୋନ୍ କରୁଛି । ଝିଅକୁ ଟିକିଏ ସଜାଗ କରନ୍ତୁ ।" ସ୍ତ୍ରୀ ଯେତେବେଳେ ଏକଥା ଶୁଣିଲେ ଭାରି ବିରକ୍ତ ହେଲେ । "ଏଇଥିପାଇଁ ମୁଁ କହେ ବଡ଼ ହୋଇଗଲେ ଝିଅକୁ ବାହା କରିଦେବା ଉଚିତ୍ । ସୁନ୍ଦର ଝିଅଟିଏ ଦେଖିଲେ ଆଜିକାଲି କ'ଣ ପୁଅମାନେ ରଖେଇ ଦେଉଛନ୍ତି ?" ଶତ୍ରୁଘ୍ନ କହିଲେ "ତୁମେ ଅଯଥା କଥାରେ ବ୍ୟସ୍ତ ହୁଅନା । ଆଜିକାଲି ଏମିତି ହଜାରେ ଘଟଣା । ଏଗୁଡ଼ାକୁ କିଏ ଖାତିରି କରେ ?" ସ୍ତ୍ରୀ ରାଗରେ ଗରଗର ହୋଇ ଭିତରକୁ ଚାଲିଗଲେ । ଶତ୍ରୁଘ୍ନ ଗାଲରେ ହାତଦେଇ ଡ୍ରଇଂରୁମ୍ ସୋଫା ଉପରେ ବସିଥିଲେ । ତାଙ୍କର ବହୁଦିନ ତଳର କଥାସବୁ ମନେ ପଡିଗଲା । ଏବେ ସୁଦ୍ଧା ଭୁଲି ନାହାଁନ୍ତି ସେ ସବୁ କଥା ।

ସେତେବେଳେ ଇଞ୍ଜିନିୟରିଂ କଲେଜରେ ସେ ପଢୁଥାନ୍ତି । ଆଉ ଗୋଟିଏ ବର୍ଷ ଥାଏ ପଢା ସରିବା ପାଇଁ । ଜିତେନ୍ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲା । ପ୍ରତିଦିନ ତାଙ୍କ ରୁମ୍‌କୁ ସେ ଆସେ । ତା' ସଙ୍ଗେ ବେଳେବେଳେ ଗୋଟିଏ ଝିଅ ଆସେ । ସୁନ୍ଦର ନାଁଟିଏ, ନିଳିମା । କେତେଥର ସେ ଭାବନ୍ତି ଜିତେନ୍‌କୁ ପଚାରିବେ କିନ୍ତୁ କ'ଣ ପଚାରିବେ ? ଏଇକଥା ଭାବି ଚୁପ୍ ରହନ୍ତି । ଏତେ ଘନିଷ୍ଠତା, ଏତେ ବନ୍ଧୁତା ଭିତରେ କହିବାକୁ ଚାହିଁଥିଲେ ଜିତେନ୍ କ'ଣ କହି ନଥାନ୍ତା ? ନାଁଟାରେ ତାଙ୍କର ବା କି ଦରକାର ? ପଚାରିବା ଉଚିତ୍ ନୁହେଁ ବୋଲି ସେ ସ୍ଥିର କରି ନେଇଥିଲେ ।

ସେଦିନର ସେ ଝଡ଼ ରାତି । ଆଜିକୁ ଦୀର୍ଘ ବାଇଶି ବର୍ଷ ତଳର କଥା । କାଲିପରି ଲାଗୁଛି । ରାତି ପ୍ରାୟ ସାଢେ ଏଗାର । ହଠାତ୍

ଚାରିଆଡୁ ଅନ୍ଧାର ଘୋଟି ଆସିଲା । ବିଜୁଳି ଘଡ଼ଘଡ଼ିର ଚିତ୍କାରରେ କାନ ଫାଟି ପଡିଲା । ଖାଲି ବର୍ଷା ନୁହେଁ, ପ୍ରବଳ ତୋଫାନ । ବାହାରଟା କିଳିକିଳା ଅନ୍ଧାର । ମୁହଁକୁ ମୁହଁ ଦିଶୁ ନଥାଏ । ପାଖ ରୁମ୍‌ଟା ଖାଲି । ଜିତେନ୍ କାହାକୁ କିଛି ନ କହି ସଞ୍ଜ ଟ୍ରେନ୍‌ରେ ଘରକୁ ପଳାଇ ଯାଇଥାଏ । ହଷ୍ଟେଲ୍‌ର ୱାଚ୍‌ମ୍ୟାନ୍ କହୁଥିଲା, ସେ ଏତେ ତରତରରେ ଗଲା ଯେ, ଯିବାର କାରଣ କହିବା ପାଇଁ ମଧ ତାକୁ ସମୟ ନଥିଲା । ଶତ୍ରୁଘ୍ନ ରୁମ୍ ପାଖକୁ ଲାଗି ଲାଗି ତିନିଟାଯାକ ରୁମ୍‌ରେ ତାଲା । କି ଭୟାନକ ସେଇ ରାତି ! ଭଲ ନିଦ ବି ହେଲାନି । ତେଣୁ ଶେଯରେ ପଡି ଶତ୍ରୁଘ୍ନ ଏପଟ ସେପଟ ହେଉଥାନ୍ତି । ରାସ୍ତାର ସବୁ ବତୀ ଖୁଣ୍ଟ ଗୁଡ଼ା ଲିଭିଗଲାଣି । ମନଟା କେମିତି ଗୋଟାଏ ଆଶଙ୍କାରେ ଥରି ଉଠୁଥାଏ । ଭୟରେ ସେ ଝରକା ବନ୍ଦ କଲେ । ତାଙ୍କ ପାଖରେ ଥାଏ କେବଳ ଗୋଟିଏ ଟର୍ଚ୍ଚ । ସେଥିରେ ପୁଣି ପୁରୁଣା ବ୍ୟାଟେରୀ । ମିଞ୍ଜି ମିଞ୍ଜି ଆଲୁଅ । ସେତିକି ତାଙ୍କର ଭରସା । ତାଙ୍କ ଭୟଭୀତ ମନର ଖଣ୍ଡିଆ ଖାବରା ଫଟା କାନ୍ଥଟାକୁ ସିମେଣ୍ଟ ବାଲି ଦେଇ ସତେ ଯେମିତି ଯୋଡ଼ି ଦେଉଥାଏ ସେଇ କ୍ଷୀଣ ଆଲୁଅଟି ।

ମନ ହେଉଥାଏ ଝରକା ଟିକିଏ ଖୋଲିବେ । ବାହାରେ ବତୀଖୁଣ୍ଟ ସବୁ ଜଳିଲା ନା ନାହିଁ ଦେଖିବେ । କିନ୍ତୁ ସାହସ ହେଉନଥାଏ । କାରଣ ଠିକ୍ ଝରକା ତଳକୁ ମେଞ୍ଚା ମେଞ୍ଚା ଘାସଗଛ । ଖୁବ୍ ଲମ୍ବା ଆଉ ଗହଳିଆ । ସେଠି କେତେଥର ସେ ସାପ ଦେଖିଛନ୍ତି । ଜିତେନ୍ ବି କହେ କେବେ କେବେ ଡ୍ରେନ୍ ତଳ ରାସ୍ତାଦେଇ ଗୋଟାଏ ବୋଡ଼ା ସାପ ଯିବା ଆସିବା କରେ । ଭାରି ଭୟଙ୍କର । ସେଦିନ ସେଇ ଝଡ଼ି ବର୍ଷା ରାତିରେ ସାପଟା କଥା ହିଁ ବାରମ୍ବାର ମନେ ପଡିଲା । ତାଙ୍କୁ ଲାଗିଲା ସତେ ଯେମିତି ସାପଟା ତାଙ୍କ ତକିଆ ତଳେ ଚେକା ବାନ୍ଧିଛି । ଫଁ ଫଁ ହେଉଛି ଆଉ କିଛି ସମୟ ପରେ ତାଙ୍କୁ ଦଂଶନ କରିବ । ପତଳା ଚଦରଟିକୁ ସେ ଟାଣି ଆଣିଲେ ଦେହ ଉପରକୁ । ଭୟରେ ଛାତି ଥରୁଥାଏ ।

କିନ୍ତୁ ଶୋଇ ପାରିଲେନି । ତାଙ୍କୁ ଲାଗିଲା କିଏ ଯେମିତି ତାଙ୍କ କବାଟରେ ହାତମାରୁଛି । ଏମିତି, ଏତେ ରାତିରେ କିଏ ଡାକିବ ? ବୋଧେ ମନର ଦୁର୍ବଳତା । କିନ୍ତୁ ପୁଣି ସେଇ ଶବ୍ଦ । ଏଥର ସେ କାନ ପାରି ଶୁଣିବାକୁ ଚେଷ୍ଟା କଲେ । ମନର ଦୁର୍ବଳତା ନୁହେଁ, ସତରେ କିଏ ଜଣେ ଡାକୁଛି । ଭୟରେ ଥରୁଥାନ୍ତି । ସାହସ ବାନ୍ଧି ପଚାରିଲେ କିଏ ? କିଏ ଡାକୁଛ ? କିନ୍ତୁ କୌଣସି ଉତ୍ତର ନାହିଁ । କେଉଁ ସାହସରେ ସେ କବାଟ ଖୋଲିବେ ? କିଏ କେଉଁ ଉଦ୍ଦେଶ୍ୟରେ ଯଦି ଆସିଥିବ । ପାଖ ରୁମ୍‌ରେ ମଧ୍ୟ କେହି ନାହାଁନ୍ତି । ଯଦି କିଛି ଭୟାନକ ବା ଭୌତିକ ଘଟଣା ଘଟେ ତେବେ ସାହାଯ୍ୟ କରିବାକୁ କେହି ନାହାନ୍ତି । ଭଲ ଉଦ୍ଦେଶ୍ୟ ନେଇ ଆସିଥିଲେ ଲୋକଟା ଉତ୍ତର ଦିଅନ୍ତା । ପାଟି ଖୋଲୁନି କାହିଁକି ? କବାଟ ଏପଟେ ଗୁଡ଼ାଏ ପ୍ରଶ୍ନର ବୋଝ ମୁଣ୍ଡେଇ ଶତ୍ରୁଘ୍ନ ଠିଆ ହୋଇଥାନ୍ତି । ସେପଟୁ କେବଳ ବାରମ୍ବାର କରାଘାତର ଶବ୍ଦ ।

ହଷ୍ଟେଲ୍‌ର କବାଟ ପଟାଗୁଡ଼ାକ ବହୁ ପୁରୁଣା । ଟିକିଏ ଠେଲି ଦେଲେ ଦୁଇଯୋଡ଼ କବାଟ ମଝିରେ ଛୋଟ ଛୋଟ ଫାଙ୍କା ଦେଖାଯାଏ । କବାଟ ଠେଲି ଟର୍ଚ୍ଚ ଲାଇଟ୍‌ର କ୍ଷୀଣ ଆଲୁଅରେ ସେ ସ୍ପଷ୍ଟ ଦେଖି ପାରିଲେ । ଝିଅଟିଏ କଇଁ କଇଁ ହୋଇ ଅସ୍ପଷ୍ଟ ସ୍ୱରରେ କାନ୍ଦୁଛି । ଏଥର ସାହସ କରି ସେ ଧୀରେ ଧୀରେ କବାଟ ଖୋଲିଲେ । ନିଳିମା ଭିତରକୁ ପଶି ଆସିଲା । ଶତ୍ରୁଘ୍ନଙ୍କ ଶେଯ ଉପରେ ବସିପଡି ଛୋଟ ପିଲାଙ୍କ ପରି ଭୋ ଭୋ ହୋଇ କାନ୍ଦିଲା । ଭିତରୁ କବାଟ ଦେଇ ସେ ଶେଯ ପାଖକୁ ଆସିଲେ । କ'ଣ କରିବେ ଭାବି ପାରିଲେନି । ସକାଳୁ ଯଦି ତାଙ୍କ ରୁମ୍ ଭିତରେ ନିଳିମାକୁ କିଏ ଦେଖିଦିଏ ତେବେ କ'ଣ ଭାବିବ । ଯେତେ ବୁଝାଇଲେ, ଯେତେ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ ସବୁ ବିଫଳ । ନିଳିମା କାନ୍ଦୁଛି । କହୁଛି ଜିତେନ୍ ତାକୁ ଧୋକ୍କା ଦେଇଛି । ତାକୁ ରାତି ସାଢେ ଏଗାରଟାରେ ଆସିବାକୁ କହି ତାଲା ବନ୍ଦ କରି ପଳାଇଛି । ଏମିତି ଅବିଶ୍ୱାସୀ ଏ ପୁଅଗୁଡ଼ା ! ଏମାନଙ୍କୁ ଭରସା କଲେ ଝିଅଙ୍କର ସର୍ବନାଶ

ହୁଏ । କଅଁଳେଇ କରି କଥା କହିବେ, ସବୁଥିରେ ହଁ ମାରିବେ । ନିଜ ଉପରେ ପଡ଼ିଲେ ଚୁପ୍ ଚାପ୍ ଖସିଯିବେ । ନିଶ୍ଚୟ ଜିତେନ୍ ଝିଅ ଦେଖିବାକୁ ଯାଇଛି । ତା' ମା କହୁଥିଲେ ଏବର୍ଷ ଜିତେନ୍‌ର ବାହାଘର ହେବ । ଜିତେନ୍ ବାହା ହଉ, ନିଳିମା କ'ଣ ମନା କରୁଛି ? କିନ୍ତୁ ଏମିତି ଚୋରଙ୍କ ପରି କାହିଁକି ? ଅଭିମାନର ପାହାଡ଼ ଭୁଡୁଡ଼ି ପଡିଛି ନିଳିମା ଛାତିରେ ।

ନିଳିମାର ଏ କଥାରେ ଶତ୍ରୁଘ୍ନ ରାଜି ନୁହଁନ୍ତି । ଜିତେନ୍ ଏମିତି ଧୋକାବାଜୀ ନୁହେଁ । ଜିତେନ୍‌କୁ ସେ ଭଲ ଭାବେ ଜାଣନ୍ତି । କିନ୍ତୁ ଶତ୍ରୁଘ୍ନ ସେଦିନ ନିଳିମାକୁ ବୁଝାଇ ପାରି ନଥିଲେ । ବାହାରେ ପ୍ରବଳ ବର୍ଷା । ରାତି ପାହି ସିନ୍ଦୁରା ଫାଟିଲାଣି । ଦିନର ଆଲୁଅକୁ କିଏ ନଡରେ ? ଅତିଶୀଘ୍ର ଅନ୍ଧାରୁଆରୁ ନିଳିମାକୁ ତାଙ୍କ ଘରେ ପହଞ୍ଚାଇବାକୁ ପଡ଼ିବ । କାନ୍ଦି କାନ୍ଦି ନିଳିମା ଗପି ଚାଲିଥାଏ । ଜବରଦସ୍ତ ତାକୁ ଟାଣି ଟାଣି ଶତ୍ରୁଘ୍ନ ହଷ୍ଟେଲ୍‌ର ତଳ ରାସ୍ତା ଦେଇ ଠିକ୍ ବଡ଼ଖୁଣ୍ଟ ପାଖରେ ପହଞ୍ଚିଛନ୍ତି, ଦେଖିଲେ ନୀଳମାଧବ ତା' ରୁମ୍‌ର ଝରକା ଖୋଲି ବାହାରକୁ ଚାହିଁଛି । ତା ମୁହଁରେ ଆଶ୍ଚର୍ଯ୍ୟ, ଆଉ ଓଠରେ ଭଙ୍ଗା ହସଟିଏ । ଠିକକୁ ଠାକ କରେ ନୀଳମାଧବ । ସେ ଏ ଝିଅଟିକୁ ଥରେ ନୁହେଁ, ବହୁତଥର ଦେଖିଛି ଜିତେନ୍ ସାଙ୍ଗରେ । କେବେ ବଜାରରେ, କେବେ ମନ୍ଦିର ପଛ ପାଖ କୃଷ୍ଣଚୂଡ଼ା ଗଛ ମୂଳେ । ଝିଅଗୁଡ଼ାକ ସତେ ଏତେ ଖରାପ । ଏମାନଙ୍କୁ ଚିହ୍ନିବା ମୁସ୍କିଲ୍ । ଆଜି ଆ'ର ତ କାଲି ତା'ର । ଏଗୁଡ଼ାଙ୍କ ପଛରେ ଧାଇଁଲେ ମଣିଷ ମଲା ।

ଭୋର୍ ଚାରିଟା । ଶତ୍ରୁଘ୍ନ ରୁମ୍‌କୁ ଫେରି ଶୋଇବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେନି । ସେଇ ଗୋଟିଏ କଥା ମନ ଭିତରେ ଗୋଳେଇ ଘାଣ୍ଟି ହେଲା । ନୀଳମାଧବ ତାଙ୍କୁ ଦେଖିଲା । ଯଦି କାହାକୁ କହିବ ତେବେ ନିଳିମା କ'ଣ କରିବ ?

ରାତି ପାହି ସକାଳ ହେଲା । ଶତ୍ରୁଘ୍ନ କବାଟ ଖୋଲିଲା ବେଳକୁ ତାଙ୍କ ରୁମ୍ ଆଗରେ ପ୍ରାୟ କୋଡ଼ିଏ ପଚିଶ ଜଣ ସାଙ୍ଗ ଠିଆ ହୋଇଛନ୍ତି ।

ସମସ୍ତଙ୍କ ମୁହଁରେ ଗୋଟିଏ ପ୍ରଶ୍ନ "କେବେଠୁ ଏସବୁ ଚାଲିଛି ?" ଶତ୍ରୁଘ୍ନ କି ଉତ୍ତର ଦେବେ ? ମୁହଁ ଲାଲ୍ ପଡି ଯାଇଥାଏ । ସବୁଆଡ଼େ ଚାଲିଲା ଚୁପୁରୁ ଚାପର ଫୁସୁରୁ ଫାସର ।

ଏ ଘଟଣାର ଚାରିଦିନ ପରେ ପ୍ରିନ୍‌ସିପାଲ୍ ଶତ୍ରୁଘ୍ନଙ୍କୁ ଅଫିସ୍‌କୁ ଡକାଇଲେ । ସେ ଯାଇ ଅଫିସ୍‌ରେ ମୁହଁ ପୋତି ଠିଆ ହୋଇଥାନ୍ତି । ମେଘ ଗର୍ଜିଲା ପରି ଗାଳି ବର୍ଷୁଥାଏ । 'ସତ କୁହ ନିଳିମାର ଇଚ୍ଛା ବିରୁଦ୍ଧରେ ତୁମେ ଏସବୁ କରିଛ ନା ସେ ନିଜେ ତୁମ ପାଖକୁ ଆସିଥିଲା ?' ଶତ୍ରୁଘ୍ନ କ'ଣ କହିବେ ଭାବି ପାରୁନଥାନ୍ତି, ତାଙ୍କ କଥା ବା କିଏ ଶୁଣିବ ? ସେ ବଦ୍‌ମାସ । ଗୋଟାଏ ନିରୀହ ଝିଅକୁ ରାତି ସାରା ଘର ଭିତରେ ରଖିଥିଲେ । ଶେଷରେ ଶତ୍ରୁଘ୍ନ ବାଧ୍ୟରେ ମାନିନେଲେ । କହିଲେ, ସବୁ ଦୋଷ ତାଙ୍କରି, ନିଳିମାର ନୁହେଁ ।

ଆଠଦିନ ପରେ ଜିତେନ୍ ଗାଁରୁ ଫେରିଲା । ତା' ମାଆଙ୍କ ଦେହ ଏବେ ଭଲଅଛି । ପ୍ରିନିସ୍‌ପାଲଙ୍କୁ ଦେଖା କରି ଜିତେନ୍ ରୁମ୍‌ଆଡ଼କୁ ମୁହାଁଇଲା । ରୁମ୍ ଚାବି ଖୋଲୁ ଖୋଲୁ ସାଙ୍ଗମାନଙ୍କୁ ନେଇ ନୀଳମାଧବ ଆସି ପହଞ୍ଚିଲା । ଜିତେନ୍ ଯାହାସବୁ ଶୁଣିଲା ସେଥିରେ ତା'ମୁଣ୍ଡ ଭିତରେ ପୃଥିବୀଟା ସତେ ଯେମିତି ଫାଟି ପଡୁଛି । ବ୍ରଜେନ୍ଦ୍ର, ଅମୀୟ, ନିଷାନ୍ ସମସ୍ତେ କ'ଣ ମିଛ କହୁଛନ୍ତି । ନୀଳମାଧବ ଜିତେନ୍‌କୁ କହିଲା 'ନ ବାଛି ନ ବାଛି ଶେଷରେ ଗୋଟାଏ ଏମିତି ଝିଅକୁ ବାଛିଲୁ ?. ଶତ୍ରୁଘ୍ନଟା ଭାରି ମାରାତ୍ମକ, ମୁଁ ପ୍ରଥମରୁ କହୁଥିଲି ନା, ଏଥର ବୁଝିଲୁ ତ ?

ଜିତେନ୍ ଆଖିରେ ଲୁହର ବନ୍ୟା । ଖାଲି ବନ୍ୟା ନୁହେଁ, ବନ୍ୟାର ମହାପ୍ଲାବନ । ଜୀବନଟା ସତେ କେତେ ଅସହାୟ । ଅସହ୍ୟ ଯନ୍ତ୍ରଣାର ସ୍ତୁପ । ତଥାପି ଭାବିଲା ଥରେ ମାତ୍ର. ସେ ନିଜେ ଶତ୍ରୁଘ୍ନକୁ ପଚାରିବ - ଏଇ କ'ଣ ପ୍ରକୃତ ବନ୍ଧୁତା ?

ଶତ୍ରୁଘ୍ନ ଆଠଦିନ ହେବ ରୁମ୍ ବନ୍ଦ କରି କୁଆଡ଼େ ଯାଇଛି ତା'ର ପତା ନାହିଁ । ନିଳିମା ଜିତେନ୍‌କୁ କେତେ ବୁଝାଇଲା । "ମମତାର ଲୁହ ଲହୁ

ଦେଇ ଯାହାକୁ ଏତେ ଭଲ ପାଇଥିଲ ତାକୁ କ'ଣ ଏମିତି ଭୁଲ୍ ବୁଝି ଏତେ ଶୀଘ୍ର ଭୁଲିଯିବ ?''

ଆଜି କିନ୍ତୁ ଜିତେନ୍ ପଥର ପାଲଟିଛି । କିଛି ବୁଝିବା ଅବସ୍ଥାରେ ସେ ନାହିଁ । ମୁଣ୍ଡ ପିଟି ପିଟି ତା' ପାଖରେ ନିଳିମା କାନ୍ଦୁଛି । ଜିତେନ୍ କିନ୍ତୁ ପଥର ମୂର୍ତ୍ତି ପରି ନୀରବ ପାଲଟି ଯାଇଛି ।

ମାମୁଁ ମାଇଁ ତୀର୍ଥ କରି ଯାଇଛନ୍ତି । ରଥଯାତ୍ରା ଆଉ ତିନିଦିନ । ଶ୍ରୀମନ୍ଦିର ଉପରେ କଳାଠାକୁରଙ୍କ ପତିତପାବନ ବାନା ଉଡୁଛି । ମାମୁଁଘରର ପୂର୍ବପଟ ଝରକା ଖୋଲି ଶତ୍ରୁଘ୍ନ ଚାହିଁ ରହିଛନ୍ତି, ସେଇ ପତାକାକୁ । ମନରେ ଅନେକ ପ୍ରଶ୍ନ - ପ୍ରଭୁ ! ତୁମେ ଏଥିରୁ କ'ଣ ପାଇଲ ? ମତେ ଅକାରଣରେ ଏମିତି ଲୋକହସା କଲ କାହିଁକି ? କି ଅପରାଧ କରିଥିଲି ମୁଁ ?

ଶତ୍ରୁଘ୍ନ ଏମିତି ଭାବି ଚାଲିଛନ୍ତି - ଠିକ୍ ଏତିକି ବେଳେ କବାଟରେ କାହାର କରାଘାତ ଶୁଭିଲା । ଏତେବେଳେ କିଏ ? ସଞ୍ଜ ଗଡ଼ି ଆସିଲାଣି । ଦୂରରେ ମନ୍ଦିରରୁ ଘଣ୍ଟ ଆଳତୀ ଶୁଭୁଛି ।

ଅନ୍ୟମନସ୍କ ଭାବରେ ଶତ୍ରୁଘ୍ନ ଯାଇ ଦ୍ୱାର ଖୋଲିଦେଲେ । ସେ ଯାହା ଦେଖିଲେ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । କେତେ ସୁନ୍ଦର ଚେହେରା । ନୀଳ ରଙ୍ଗର ଝିନ୍ ପାଟବସ୍ତ୍ର ଭିତରୁ ଗୋରା ତକତକ ଦେହଟି ଲକ୍ଷେ ଗୋଲାପର ଭ୍ରମ ସୃଷ୍ଟି କରୁଛି । ସୁନାଗହଣାରେ ସାରା ଦେହ ସତେ ଛାଇ ହୋଇ ଯାଇଛି । ଅପୂର୍ବ ସୌନ୍ଦର୍ଯ୍ୟ !!

ଶତ୍ରୁଘ୍ନ ଭାବିଲେ - 'ଏ ଗରିବ କୁଟୀରକୁ ଲକ୍ଷ୍ମୀ ବିଜେ କରି ନାହାନ୍ତି ତ ? ଏମିତି ଭାବୁଥିବା ବେଳେ ସ୍ତ୍ରୀଟି ତାଙ୍କ ପାଦତଳେ ଆସି କଚାଡ଼ି ହୋଇ ପଡିଗଲା । ଢାଙ୍କି ହୋଇ ରହିଥିବା ଓଢଣାଟି ଖସି ପଡିଲା ମଥା ଉପରୁ । ଶତ୍ରୁଘ୍ନ ଆଶ୍ଚର୍ଯ୍ୟ ହୋଇଗଲେ -

ଆଉଥରେ ଅତୀତର ସେଇ ବୁକୁଫଟା କାନ୍ଦଣା କାନ୍ଦୁଥିଲା ନିଳିମା । ପାଗଳଙ୍କ ପରି ଶତ୍ରୁଘ୍ନ ନିଳିମାକୁ ଛାତି ଉପରକୁ ଟାଣି ଆଣିଥିଲେ । ସାନ୍ତ୍ୱନା ଦେଇ କହିଥିଲେ, ''ତୁମେ କାନ୍ଦନି ନିଳିମା, ଏଥର ତୁମକୁ ବତୀଖୁଣ୍ଟ ତଳ ରାସ୍ତା ଦେଇ ଆଉ ଫେରିଯିବାକୁ ପଡ଼ିବନି ।''

XX XX XX XX XX

ବେଡ୍‌ରୁମ୍‌ର ବତୀ ଲିଭାଇ ଶତ୍ରୁଘ୍ନଙ୍କୁ ହଲାଇ ଦେଲେ ନିଳିମା । କହିଲେ - ''କ'ଣ ଭାବୁଛ ଏତେ ରାତିଯାଏ ? କ'ଣ ନିଦ ହେଉନି ?' ଚମକି ପଡିଲେ ଶତ୍ରୁଘ୍ନ । ଟିକିଏ ହସି କହିଲେ 'ତୁମେ ସେଇ ନିଳିମାଟି ? ଆଜି ଚାଳିଶ ବର୍ଷ ବୟସରେ ପଦାର୍ପଣ କରିଛ ବୋଧହୁଏ । ଝିଅ ପାଖକୁ ଫୋନ୍ ଟିକିଏ ଆସିଲେ ବ୍ୟସ୍ତ ହୋଇ ପଡୁଛ ନା ?''

ନିଳିମା ଶତ୍ରୁଘ୍ନଙ୍କ ହାତ ପାପୁଲିକୁ ଚିପି ଧରି କହିଲେ - ''ସେଇ କଥା ଏଯାଏ ଭୁଲିନା ଟି ?''



# କେତୋଟି ମୁହୂର୍ତ୍ତ

ପରିବା ଦୋକାନ କଡ଼କୁ ଖୁଣ୍ଟି ପରି ଠିଆ ହୋଇଥାଏ ମୁଁ । ସେ ମତେ ଦି' ତିନିଧର ଚାହିଁଲେ । ତାଙ୍କ ଚାହାଣୀ ମତେ ଯେମିତି ଛୁରା ଭୂଷି ଦେଉଥାଏ । ଭାରି ବିରକ୍ତ ଲାଗୁଥାଏ । ଏଣେ ଏତେ ଭିଡ଼ ଯେ, ଠିଆ ନହୋଇ ଉପାୟ ନାହିଁ । ଏଇଥିପାଇଁ ମୁଁ ପରିବା ଦୋକାନକୁ ଆସେନି ।

ସେ ଭଦ୍ରଲୋକଙ୍କୁ କେଉଁଠି ଦେଖିଲା ପରି ମନେ ହେଉଥାଏ । କିନ୍ତୁ ଚିହ୍ନିଲା ପରି ଲାଗୁ ନଥାଏ । ଏମିତି ସିଧାସଳଖ ଜଣକୁ ଚାହିଁବାଟା ଭଲ ନୁହେଁ ଅର୍ଥ ବୋଲିତ ସମସ୍ତେ ଜାଣନ୍ତି, ତେବେ ସେ ମୋତେ ବାରମ୍ବାର ଚାହିଁବାର ଅର୍ଥ କ'ଣ ହୋଇପାରେ, ମୁଁ ବୁଝି ପାରୁନଥାଏ । ବଡ଼ ବ୍ୟସ୍ତ ଲାଗିଲା ମତେ । ଶେଷକୁ ମୁଁ ପଛକୁ ମୁହଁ କରି ଠିଆ ହେଲି । ମନଟା କିନ୍ତୁ ଚଙ୍ଗ୍ ଚଙ୍ଗ୍ ହେଉଥାଏ । ସେ ମତେ ପୁଣି ଚାହୁଁ ନାହାଁନ୍ତି ତ ? ହଠାତ୍ ବୁଲିପଡ଼େ ତ ଭଦ୍ରଲୋକ ଅନ୍ତର୍ଦ୍ଧାନ । ଓଃ, ଏଥର ଶାନ୍ତିରେ ନିଃଶ୍ୱାସ ମାଇଲି ।

ପରିବା କିଣା ସରିଥାଏ । ପରିବା ବ୍ୟାଗ୍‌ଟି ଧରି ଘରମୁହାଁ ଏମିତି ବଡ଼ ବଡ଼ ପାହୁଣ୍ଡ ପକାଇଲି ଯେ, ସମୀର ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ମୋର ଏମିତି ଚାଲି ସେ କେବେ ଦେଖି ନଥିଲେ । ଦୁହେଁ ଚା' ଦୋକାନରେ ଚା' ପିଇ ଘରକୁ ଫେରିଲୁ । ମୋର ଏମିତି ଜୋର୍‌ରେ ଚାଲିବା ଦେଖି ସମୀର ଖୁବ୍ ଅନ୍ୟମନସ୍କ ହୋଇ ପଡିଥାନ୍ତି, ଜାଣିଲି । ମୋତେ କିନ୍ତୁ ସେ ବିଷୟରେ କିଛି ପଚାରିଲେ ନାହିଁ । ତେଣୁ ମୁଁ ମନେ ମନେ ରକ୍ଷା ପାଇଗଲି ବୋଲି ଭାବୁଥାଏ ।

ଭଲ ପାଇବା ତ ଦୂରର କଥା । ସେ ସ୍ୱପ୍ନ ସୁଦ୍ଧା, ମତେ କେବେ

ଆତ୍ମହରା କରିଛି, ମୋର ମନେ ନାହିଁ। ଏମିତି କେବେ କୌଣସି ଘଟଣା ଶୁଣିଲେ ବି ମୋର ନାପସନ୍ଦ। ଅବିବାହିତା ଜୀବନରେ ଏମିତି ସୁଯୋଗ ଯେ ନଆସିଛି, କହି ହେଉନି। ସେସବୁକୁ ବୋଧହୁଏ ମୋ ଅଜ୍ଞତା ମୋ' ଠାରୁ ଦୂରେଇ ନିଏ କିମ୍ବା ହୁଏତ ମୋର ବୁଝିବାର ଶକ୍ତି ନଥାଏ କିବା ବୁଝି ମୁଁ ଅବୁଝା ହୁଏ ଜାଣେନି।

କିନ୍ତୁ ସେଦିନର ଘଟଣାଟି ମୋ ହୃଦୟରେ ଗୋଟିଏ ଗହିରା ଦାଗ ହୋଇ ରହିଗଲା। ବିରକ୍ତ ଅବଶ୍ୟ ଲାଗିଥିଲା, ସେଇ କେତୋଟି ମୁହୂର୍ତ୍ତ। ପରେ ପରେ ନିଜକୁ ଖୁବ୍ ଦୁର୍ବଳ ଅନୁଭବ କରିଥିଲି। ହୃଦୟ ଗହ୍ୱରର ସବୁ ଅନ୍ଧକାର ଯେମିତି ଗୋଟାଏ ଅସ୍ୱଷ୍ଟ ଆଲୋକରେ ଝଲସି ଉଠିଥିଲା।

ସେଦିନ ସନ୍ଧ୍ୟା। ମେଞ୍ଚା ମେଞ୍ଚା ଅନ୍ଧାର ଗୁଡ଼ାକ ସତେ ଯେମିତି ବାଦଲ ପରି ଭାସି ଯାଉଥିଲେ ନୀଳ ଆକାଶରେ, ଦୂରକୁ, ବହୁ ଦୂରକୁ। କି ଏକ ନୂତନତାରେ ମନପ୍ରାଣ ଭରି ଯାଉଥିଲା। ସୁନ୍ଦର ସେଇ ଅଚିହ୍ନା ମୁହଁଟି ଖାଲି ଆଗରେ କାହିଁକି, ମନର ଖୁବ୍ ଗଭୀରତମ ପ୍ରଦେଶରେ ଯେ ବାରମ୍ବାର ନାଚି ଉଠୁଥିଲା, ଏକଥା ମିଛ ନୁହେଁ।

ସେ ମୁହଁଟି ମନେ ପଡ଼ିବାରେ ଏମିତି କିଛି ନୂଆ କଥା ନଥିଲା। କିମ୍ବା ମୋ ତରଫରୁ ଯେ କୌଣସି ଭିନ୍ନ ପ୍ରକାର ଆଗ୍ରହ ଥିଲା, ତା ନୁହେଁ। କିନ୍ତୁ କେଜାଣି କାହିଁକି ପୂର୍ବପରି ପରିବା ଦୋକାନକୁ ନଯିବାର ମନୋବୃତ୍ତିକୁ ମୁଁ ହଠାତ୍ ବଦଳାଇ ଦେଲି। ଏ ଘଟଣା ପରେ ପରେ ଆଗ୍ରହର ସହିତ ମୁଁ ସମୀରଙ୍କ ସଙ୍ଗେ ପ୍ରାୟ ଦିନ ଦୋକାନକୁ ଯାଏ।

ସେଇ ଏକାକଥା। ପ୍ରତିଥର ତାଙ୍କୁ ଦେଖେ, ସେ ମତେ ଚାହାଁନ୍ତି। ମୁଁ ନ ଦେଖିଲା ପରି ଠିଆ ହୁଏ। ଅନେକ ଦିନ ପରେ। ଦିନେ ସମୀରଙ୍କୁ ପଚାରିଲି ପରିବା ଦୋକାନ ପାଖରେ ସେ ଯେଉଁ ଭଦ୍ରଲୋକ ତୁମ ସଙ୍ଗେ କଥାବର୍ତ୍ତା ହୁଅନ୍ତି ସେ କିଏ ? ମୋ ପ୍ରଶ୍ନରେ ସମୀର ଆଶ୍ଚର୍ଯ୍ୟ ହେବା ପରି ଜଣାଗଲା। ତାଙ୍କ ସଙ୍ଗେ "ଅନେକ ଲୋକ ତ କଥାବାର୍ତ୍ତା ହୁଅନ୍ତି।" ସେ

ଯେତେବେଳେ ଏଇ କଥା କହିଲେ, ଜାଣିପାରିଲି ସେ ମୋଟ ଉପରେ ସେ ଭଦ୍ରଲୋକଙ୍କ ପ୍ରତି ଲକ୍ଷ୍ୟ ରଖି ନାହାଁନ୍ତି ବା ତାଙ୍କୁ ଦେଖି ନାହାଁନ୍ତି ।

ଆମେ ସେତେବେଳେ ସେଇ ସହରରେ ଦୁହେଁଯାକ ନୂଆ । ଭଡ଼ାଘର ଖଣ୍ଡେ ମିଳିଥାଏ, ଠିକ୍ ସହରର ପାହାଡ଼ତଳି ଅଞ୍ଚଳରେ । ସାମ୍ନାରେ କିଛିଦୂର ଗଲେ ଡାକ୍ତରଖାନା ଏବଂ ତା'ର ପୂର୍ବଦିଗକୁ ବାଳିକା ବିଦ୍ୟାଳୟଟିଏ । ପାହାଡ଼ିଆ ରାସ୍ତାଗୁଡ଼ାକ ଉଚ୍ଚାନୀଚା । ତେଣୁ ସେ ଅଞ୍ଚଳରେ ରିକ୍ସାର ବନ୍ଦୋବସ୍ତ ନାହିଁ । ଯୁଆଡ଼େ ଯାଅ, ଯଦି ନିଜର ମଟର ସାଇକେଲ୍ ବା ସାଇକେଲ୍ ଅଛି ତ ଭଲ, ନଚେତ୍ ପାଦରେ ଚାଲି ଯିବାକୁ ପଡ଼େ । ଆମେ ଗାଡ଼ି ଖଣ୍ଡିଏ ମଧ୍ୟ ସେତେବେଳେ କିଣି ନଥାଉ ।

ସୁରୁଖୁରୁରେ ସମୟ କେଜାଣି କେମିତି କଟିଯାଏ । ଅବଶ୍ୟ ବେଳେବେଳେ ଖୁବ୍ ଏକାଟିଆ ବା ନିକାଞ୍ଚନ ଲାଗେ । ତଥାପି ଆମେ ଦୁହେଁ ବୋଧହୁଏ ପରସ୍ପରକୁ ବନ୍ଧୁ ଭାବରେ ଗ୍ରହଣ କରି ନେଇଥାଉ, ତେଣୁ ବିଶେଷ ବିରକ୍ତି ବୋଧ ହୁଏ ନାହିଁ । ଏଇ କେତେଦିନ ଭିତରେ ଅଳ୍ପ କିଛି ସାହି ପଡିଶାଙ୍କ ସହିତ ବନ୍ଧୁତା ସ୍ଥାପନ କରିଥାଉ । ସମୀରଙ୍କର ନୂଆହୋଇ ବଦଳି ହୋଇଥାଏ ସେଇ ସହରକୁ । କେତେଜଣଙ୍କୁ ଜାଣିଥାଉ ସତ କିନ୍ତୁ କାହାରି ସହିତ ଏତେଟା ଘନିଷ୍ଠତା ବା ନିକଟ ସମ୍ପର୍କ ନଥାଏ । ସ୍ୱାମୀ ସ୍ତ୍ରୀ ଦୁହେଁ ଦୁହିଁଙ୍କର ବନ୍ଧୁ ସାଜିଥାଉ । ବେଶ୍ ମଜାରେ ମଧ୍ୟ ଦିନଗୁଡ଼ାକ କଟିଯାଏ ।

ସେଦିନ ସନ୍ଧ୍ୟା । ଦାଣ୍ଡ ପଟୁ କଲିଂ ବେଲ୍ ଶୁଭିଲା । ଚାରିଦିନ ହେବ ସମୀର ଟୁର୍‌ରେ ବାହାରକୁ ଯାଇଥାନ୍ତି । ପ୍ରଥମେ ଭୟ ଲାଗିଲା କବାଟ ଖୋଲିବାକୁ । ପରେ ଭାବିଲି, ସନ୍ଧ୍ୟା ତ, ରାତି ନୁହେଁ । ଡରିବାର କିଛି କାରଣ ନଥିଲା । କବାଟ ଖୋଲିଲି । ସେଇ ସୁନ୍ଦର ମୁହଁଟି, ନିରୀହ ନିଷ୍ପାପ । ବାଧ୍ୟହୋଇ ଭିତରକୁ ଡାକିଲି । ବସିବାକୁ କହିବା ପୂର୍ବରୁ ସେ ବସି ପଡିଲେ । ପ୍ରଥମେ  ନୀରବତା, ଦୁହିଁଙ୍କ ତରଫରୁ । ବାଧ୍ୟରେ ନୀରବତା

ଭଙ୍ଗ କରି ପଚାରିଲି "ନାଁ କ'ଣ ? ଏଠି କେଉଁଠି ରହନ୍ତି ?" ଛୋଟ ଉତ୍ତରଟେ ଦେଇ କହିଲେ 'ଶୁଭ୍ରାଂଶୁ, ରାଜମହଲରେ ।" ଏତେ ସଂକ୍ଷିପ୍ତ ଉତ୍ତର୍ ଆଗରୁ କେବେ, କାହାରିଠୁ ପାଇନଥିଲି । ଲୋକଟି ଗପୁଡ଼ା ନୁହେଁ ବୋଲି ବୁଝିଗଲି । ଆଉ ବେଶି କିଛି ପଚାରିଲି ନାହିଁ । ଭିତରକୁ ଯାଇ କଫି ଦୁଇକପ୍ ଆଣିଲି । ଦୁହେଁ ପିଇଲୁ ।

କିଛି ସମୟ ପରେ ସେ ଉଠି ଠିଆ ହେଲେ । କହିଲେ "ତେବେ ମୁଁ ଆସୁଛି ।" ଏତିକି କହି ନମସ୍କାର କଲେ । କିଛି ବୁଝିପାରିଲିନି । ଭଦ୍ରଲୋକ ଜଣକ କ'ଣ ପାଇଁ ଆସିଥିଲେ ? ମୋ ଘରକୁ ଆସିଲେ, ମୋ ସଙ୍ଗେ କଫି ପିଇଲେ ଅଥଚ ଆସିବାର କାରଣ ମୁଁ ପଚାରି ପାରିଲି ନାହିଁ କାହିଁକି ? ସେ ଚାଲିଗଲେ । କ'ଣ ଭାବି ତାଙ୍କ ପଛେ ପଛେ ଗେଟ୍ ପର୍ଯ୍ୟନ୍ତ ମୁଁ ଗଲି ଗେଟ୍ ବନ୍ଦ କରିବା ବେଳେ ପଚାରିଲି - 'କୁଆଡ଼େ ଆସିଥିଲେ ?' ସେ କହିଲେ - "ଏମିତି" । ମୁଁ ନଛୋଡ଼ ବନ୍ଧା କହିଲି କ'ଣ କାମଥିଲା ? ସେ ହସିଲେ, କହିଲେ "ପରେ କହିବି ।" ଏକଥା ଶୁଣି ମନଟା ଅସ୍ଥିର ହୋଇଉଠିଲା । ସେ ଚାଲିଯିବା ପରେ ଘରର ସବୁ ଝରକା କବାଟ ବନ୍ଦ କଲି । ଶୀଘ୍ର ଶୋଇବାର ଇଚ୍ଛା ଥିଲା, ଲାଇଟ୍ ଲିଭାଇଲି । କିନ୍ତୁ ଭଲ ନିଦ ହେଲାନାହିଁ ।

ପୁଣି ତିନିଦିନ ପରେ ସେ ଆସିଲେ - ସମୀର ଥିଲେ । ତାଙ୍କ ଆସିବା ପୂର୍ବରୁ ସମୀରଙ୍କୁ ତାଙ୍କ କଥା କହିଥିଲି । ଯାହା ହେଉ ଦୁହିଁଙ୍କ ଭିତରେ ଅଚାନକ ବନ୍ଧୁତା ସୃଷ୍ଟି ହୋଇଗଲା । ସମୀରଙ୍କ ଆଳରେ ସେ ଭଦ୍ରଲୋକ ପ୍ରାୟ ଅଧିକାଂଶ ଦିନ ଆସିବାକୁ ଆରମ୍ଭ କଲେ । ଶେଷକୁ ଆରମ୍ଭଟି ଅଭ୍ୟାସରେ ପରିଣତ ହେଲା । ତାଙ୍କୁ ଆମେ କିଛି କହି ପାରୁନଥିଲୁ । କ'ଣ ବା କହିବୁ ?

ସେଦିନ ସୋମବାର, ତାଙ୍କୁ ଏକୁଟିଆ ପାଇବାର ସୁଯୋଗ ମିଳିଲା । ମନରେ ଟିକିଏ ସାହସ ବାନ୍ଧି କହିଲି "ଆମେ ଦିହେଁ ତ

ଆପଣଙ୍କୁ ଜାଣିନାହୁଁ, କିନ୍ତୁ ଅନାହୂତ ଭାବରେ ଆପଣ ତ ଆମର ଘନିଷ୍ଠ ହୋଇଗଲେଣି । କିନ୍ତୁ ଏଠିକୁ ଆସି ଏତେ ସମୟ ନଷ୍ଟ କରି ଆପଣ ପାଆନ୍ତି କ'ଣ ?'' ମୋ କଥା ଶୁଣି ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇ ମତେ ଚାହିଁଲେ । ବୋଧେ ମୋ ପ୍ରଶ୍ନର ଉତ୍ତର ସଂକ୍ଷିପ୍ତ ନଥିଲା, ତେଣୁ ସେ ଅଡୁଆରେ ପଡିଲେ । କହିଲେ ''ତୁମେ ବୋଧେ କଲେଜ ଜୀବନ କଥା ଏଇ ଛ ସାତ ବର୍ଷ ଭିତରେ ସଂପୂର୍ଣ୍ଣ ଭୁଲି ଯାଇଛ ।'' ମୋ ନାଁ ଶୁଭ୍ରାଂଶୁ ନୁହେଁ, ଯତୀନ୍ ।'' ତାଙ୍କ କଥା ଶୁଣି ଚମକି ପଡିଲି । ସେ କିନ୍ତୁ କଥା ବନ୍ଦ ନକରି କହି ଚାଲିଥାନ୍ତି । ''ମୁଁ ଚତୁର୍ଥ ବାର୍ଷିକ କଳା ଛାତ୍ର ଥିବାବେଳେ ତୁମ ସଙ୍ଗେ ବହୁତ କଥାବାର୍ତ୍ତା ହେଉଥିଲା - ଆମ ଦୁହିଁଙ୍କ ଘନିଷ୍ଠତା ବଢିଯିବା ପରେ ମନେଥିବ, ଯେଉଁଦିନ ତୁମ ଆଗରେ ବିବାହ ପ୍ରସ୍ତାବ ଉପସ୍ଥାପନା କରିଥିଲି, ଠିକ୍ ସେଇଦିନଠାରୁ ତୁମେ ମୋ ଠାରୁ ଖୁବ୍ ଦୂରେଇ ଗଲ । ଅଲଗା ଅଲଗା ଲାଗିଲ । ତୁମ ଭିତରର ସ୍ନେହ, ମମତା, ଆତ୍ମୀୟତା ସବୁ ଯେମିତି କୁଆଡ଼େ ଉଭେଇ ଗଲା । ଏହାର କାରଣ ତୁମକୁ ପଚାରିବାର ସୁଯୋଗ ମଧ୍ୟ ପାଇଲି ନାହିଁ । ସବୁ ଘଟଣାଗୁଡ଼ିକ ମୋ ପାଇଁ ଇତିହାସ ହୋଇ ରହିଗଲା ।''

ମୁଁ ତାଙ୍କ ମୁହଁକୁ ନିର୍ବାକ୍ ଭାବରେ ଚାହିଁ ରହିଥିଲି । ସେ କହିଚାଲିଥିଲେ - ''ହଠାତ୍ ପରିବା ଦୋକାନ ପାଖରେ ତୁମକୁ ଆବିଷ୍କାର କଲି, ଯାହାକି ଆନନ୍ଦ ଅନୁଭବ କଲି, ତା ତୁମେ ହୁଏତ ଆଜି ବୁଝି ପାରିବନି । ପରିବା ଦୋକାନ ପାଖରେ ଅନେକଥର ଦେଖି ମଧ୍ୟ ତୁମେ ଯେ ଆଜି ପର୍ଯ୍ୟନ୍ତ ମତେ ଚିହ୍ନି ପାରିନାହଁ, ତା ମୁଁ ଜାଣିବି କିପରି ? ଏଇ କ'ଣ ଥିଲା ତୁମର ସେଇ ଅନାବିଳ ପ୍ରେମ ? ଏଇ କ'ଣ ଥିଲା ତୁମ ଭଲ ପାଇବା ? ଅବଶ୍ୟ ସେତେବେଳେ ମୋର ଏଇ ଲମ୍ବା ଦାଢି ନଥିଲା ।''....

ଏତିକି କହି ସେ ଟିକିଏ ହସିଲେ, କି ସୁନ୍ଦର ସେଇ ହସ ! ସେଇ ହସ ଟିକକ ମତେ ମନେ ପକେଇ ଦେଲା, ଅତୀତର ସବୁ କଥା । ଛାତିଟା

ଏକ ଅଜଣା ଆଶଙ୍କାରେ ଥରି ଉଠିଲା । ମନ ଭିତରେ ହଠାତ୍ ଯେମିତି ଗୋଟାଏ ଅଶାନ୍ତ ଝଡ଼ ବହିଗଲା ମୁହୂର୍ତ୍ତକ ଭିତରେ । ପ୍ରକୃତରେ ସବୁ ମୋର ଭୁଲ୍ ଥିଲା । ନିଜକୁ ଦୋଷୀ ସାବ୍ୟସ୍ତ କରି କ୍ଷମା ମାଗିନେବା ପାଇଁ ଇଚ୍ଛା ହେଉଥିଲା । ନିଜକୁ ସମ୍ଭାଳି ପାରିଲିନି । ହଠାତ୍ ମୋ ପାଟିରୁ କଥା ପଦେ ବାହାରି ଆସିଲା । ପଚାରିଦେଲି - ବିବାହ କଲଣି ? ଉତ୍ତର ମିଳିଲା 'କରିନି', କରିବିନି ବୋଲି ସ୍ଥିର କରିଛି ।

ମୋ ଅଜାଣତରେ ଆଖିରୁ ମୋର ଲୁହ ଝରିପଡିଲା । ଲୁହକୁ ଲୁଚାଇବାକୁ ଚେଷ୍ଟା କରି ପାରିଲିନି । ସେ ମତେ ଚାହିଁଥିଲେ । ମନେ ମନେ ମୁଁ ଭାବୁଥିଲି - ପୁରୁଷର ସରଳ ପ୍ରାଣକୁ ମୁଁ ଯେଉଁ ଆଘାତ ଦେଇଛି, ଭଗବାନ କ'ଣ ମତେ କ୍ଷମା। ଦେବେ ? ନା, କେବେ ନୁହେଁ ।

ତଳକୁ ମୁହଁ କରି ମୁଁ ବସିଥିଲି । ସେ କିଛି ନ କହି ହଠାତ୍ ଉଠି ଚାଲିଗଲେ । ତାଙ୍କ ପଛେ ପଛେ ଗେଟ୍ ପର୍ଯ୍ୟନ୍ତ ଗଲି କିନ୍ତୁ ସେ ଆଉ ପଛକୁ ଫେରି ଚାହିଁଲେନି । ପଛରୁ ଡାକିବାକୁ ଚେଷ୍ଟା କଲି । କିନ୍ତୁ କେଜାଣି କାହିଁକି ମୁହଁ ଖୋଲି ପାରିଲିନି । ବୋଧହୁଏ ସେ ସାହସ ମୋର ନଥିଲା ।

ଲୁହ ପୋଛି ପୋଛି ଡ୍ରଇଂ ରୁମ୍‌କୁ ଫେରିଲି । ପ୍ରତିଦିନ ତାଙ୍କୁ ଅପେକ୍ଷା କରୁଥିଲି, କିନ୍ତୁ ସେହିଦିନ ଠାରୁ ଯତୀନ୍ ଆଉ ମୋ ଘରକୁ କେବେ ବି ଆସିନାହାନ୍ତି । ପରିବା ଦୋକାନ ପାଖରେ ତାଙ୍କୁ ଠିଆ ହେବାର ମଧ୍ୟ ଆଉ ମୁଁ ଦେଖିନି ।

ସେ ଯେତେବେଳେ ମୋ ଘରକୁ ଆସୁଥିଲେ, ମନେ ମନେ ବିରକ୍ତ ହେଉଥିଲି, ତାଙ୍କୁ ହତାଦର କରୁଥିଲି । କେବେ କେବେ ଘୃଣା ବି । ଆଜି କିନ୍ତୁ ତାଙ୍କ ସହିତ ପଦେ ଅଧେ କଥାବାର୍ତ୍ତା ହେବାପାଇଁ ଇଚ୍ଛା ହୁଏ, ମନେ ମନେ ଭାବେ, ଆଉ ଥରଟିଏ ହେଲେ ଆସନ୍ତେକି ! କିନ୍ତୁ ଜୀବନରେ ଆଉ ସେ ସୁଯୋଗ ମତେ ମିଳିନି - ମିଳିବାର ଆଶା ନାହିଁ ମଧ୍ୟ ।

# ଭଙ୍ଗାନୀଡ଼

ଟ୍ୟାକ୍ସିଟା ଗାଁଠୁ ଠିକ୍ ମାଇଲିଏ ବାଟରେ ବିନୋଦ ବିହାରୀ ଛକ ପାଖରେ ଶାଳିନୀକୁ ଛାଡ଼ିଦେଇ ଚାଲିଗଲା । ସେଇଠୁ ରିକ୍ସା ଧରି ଗାଁ ଆଡ଼କୁ ଚାଲିଲା ଶାଳିନୀ ।

ବଡ଼ ତୋଟା କଡ଼େ କଡ଼େ ରିକ୍ସା ଚାଲିଥାଏ । କିଛିବାଟ ଯିବା ପରେ ନଈବନ୍ଧ ପଡ଼ିଲା । ବନ୍ଧ ଉପରେ ସେଇ ବିରାଟ ତରାଟ ଗଛଟା ସେମିତି ଅଛି, ତରାଟ ଫୁଲର ମଧୁର ବାସ୍ନାରେ ଶାଳିନୀର ଅତୀତଟା ମହମହ ବାସି ଉଠିଲା । ସେ ଏଣେ ତେଣେ ଚାହୁଁ ଚାହୁଁ ଦେଖିଲା ନଈ କୂଳରୁ କିଏ ଦୁଇଟା ତା' ରିକ୍ସା ଆଡ଼କୁ ଧାଇଁଛନ୍ତି । ଶାଳିନୀ କିଛି ଭାବି ପାରିଲାନି । କିଏ ଏମାନେ ?

ପାଖରେ ପହଞ୍ଚି ଦିହେଁ ପଚାରିଲେ ତମେ ଶାଳିନୀ ଅପାଟି ? ମୁଣ୍ଡ ହଲାଇ ଶାଳିନୀ କହିଲା 'ହଁ' । ଆଉ 'ତମେ ଦୁହେଁ' ? - ଶାଳିନୀ ମୁହଁରୁ କଥା ଛଡ଼ାଇ ନେଇ ଜଣେ କହିଲା - 'ଆମକୁ ଚିହ୍ନି ପାରୁନ ଅପା' ? ମୁଁ ପରମା, ଆଉ ସେ ପରା ସୁର ? ପିଲାଦିନେ ତମ ବାଡ଼ିରେ କାମ କରୁନଥିଲୁ ?''

ଟିକିଏ ଭାବି ଶାଳିନୀ କହିଲା - 'ତୁ କୃଷ୍ଣର ପୁଅନା' ? 'ହଁ', କହି ଦିହେଁ ହସିଲେ ।

ସତରେ ସମୟ କେମିତି ଗଡ଼ିଯାଏ । ଏମାନେ କେତେ ପିଲାଥିଲେ । ଏବେ ସତର ଅଠର ବର୍ଷର ଗଜାଟୋକା । କେମିତି ଚିହ୍ନନ୍ତା ଶାଳିନୀ ? ସେତ ଦଶବର୍ଷ ପରେ ଗାଁକୁ ଆସୁଛି ।

ଦରଭୁଲା ଅତୀତଟା ପୁଣି ଚେଇଁ ଉଠିଲା ଶାଳିନୀ ମନରେ । ଦୁଃଖ କହ, ସୁଖ କହ, ଏଇ ମନଟିକକ ପାଇଁ ତ ସବୁ । ଗାଁ କଲେଜ୍‌ରେ

ସେତେବେଳେ ଶାଳିନୀ ପାଠ ପଢୁଥିଲା । ତା' ଭିଶୋଇ ଥିଲେ ପ୍ରିନିସିପାଲ୍ । ଭିଶୋଇଙ୍କ ବନ୍ଧୁ ଅବିନାଶ ବେଳେବେଳେ କଲେଜ୍ ଆସୁଥିଲେ । ଶାଳିନୀର ରୂପ ଗୁଣରେ ମୁଗ୍ଧ ହୋଇ ଭଲପାଇ ବସିଲେ ଶାଳିନୀକୁ । ସେ ମଧ୍ୟ ପ୍ରାଣଭରି ଭଲ ପାଇଥିଲା ଅବିନାଶକୁ । ଦୁହିଁଙ୍କ ମନରେ ଅନେକ ସ୍ୱପ୍ନ ।

ଅବିନାଶଙ୍କୁ ଭଲ ପାଇବା ଘଟଣା ଅନେକଙ୍କ ମୁହଁରେ ଉପନ୍ୟାସର କାହାଣୀ ହେଲା । ଗାଁର ଦୁଷ୍ଟ ପିଲାମାନେ କାନ୍ଥରେ ବାଡ଼ରେ ଅବିନାଶ ଓ ଶାଳିନୀ ନାଁରେ କେତେ କଥା ଲେଖିଦେଲେ, କେତେ ଚିତ୍ର ଆଙ୍କିଦେଲେ । କିନ୍ତୁ ଯାହା ହେଉନା କାହିଁକି ଶେଷରେ ଦୁହିଁଙ୍କ ସ୍ୱପ୍ନ ସତ ହେଲା । ସମସ୍ତଙ୍କ ଇଚ୍ଛା ବିରୁଦ୍ଧରେ ଭିଶୋଇ ସ୍ୱପ୍ନେଶ୍ୱରଙ୍କ ନିଷ୍ପତ୍ତି ଉପରେ ହିଁ ଅବିନାଶକୁ ବାହାହେଲା ଶାଳିନୀ ।

ହସଖୁସିର ବସନ୍ତ ଋତୁରେ ଜୀବନର ମଧୁର ସଂଗୀତ ଗାଇ ଗାଇ ଶାଳିନୀ ଯେତବେଳେ ନୀଳ ଆକାଶରେ ପକ୍ଷୀଟିଏ ପରି ଉଡ଼ି ବୁଲିବାକୁ ଚେଷ୍ଟା କଲା, ଠିକ୍ ସେତିକି ବେଳେ ପ୍ରବଳ ଝଡ଼ ତୋଫାନରେ ସତେ ଯେମିତି ତା'ର ରଙ୍ଗୀନ ଡେଣା ଦୁଇଟି ଭାଙ୍ଗି ପଡିଲା । ବର୍ଷା ବିଜୁଳି ଘଡ଼ଘଡ଼ି-ସବୁଯାକ ଡକାଡକି ହୋଇ ଧାଇଁ ଆସିଲେ ଶାଳିନୀ ପାଖକୁ । ସବୁ ସୁଖ ହଜିଗଲା ସେଇ ପବନ ତୋଫାନ ଭିତରେ ।

ଶାଳିନୀ ଶୁଣିବାକୁ ପାଇଲା ଅବିନାଶ ବିବାହିତ । ସେ ଥିଲା ତାଙ୍କର ଦ୍ୱିତୀୟ ସ୍ତ୍ରୀ । ବାସ୍ତବିକ୍ ସମାଜ ହସର କାହାଣୀକୁ ଲୁହର କବିତାରେ ବଦଳେଇ ଦିଏ । କିଏ କେତେ କଥା କହିଲେ ମଥାପୋତି ସବୁ ସହିନେଲା ଶାଳିନୀ । ସମଗ୍ର ସାଗରର ଲୁହ ତା' ଆଖିରେ ଲହଡ଼ା ଭାଙ୍ଗିଲା ।

ଏବେ ଅବିନାଶ ପାଖରେ ତା'ର ଅଭିମାନ । ଅବିନାଶକୁ ଗୋଟିଏ ମାତ୍ର ପ୍ରଶ୍ନ - ''ମୋ ପ୍ରତି ତୁମେ ଏମିତି ଅନ୍ୟାୟ କଲ କାହିଁକି ?''

ପ୍ରଶ୍ନର ଉତ୍ତର ଦେଇ ଅବିନାଶ କହିଥିଲା - 'ତୁମକୁ ମୁଁ ଭଲପାଏ ଶାଳିନୀ, ତୁମକୁ ନିଶ୍ଚୟ ଘରକୁ ନେବି, ମତେ ବିଶ୍ୱାସ କର ?'

ଅବିନାଶର ଏକଥା ମିଛ ନଥିଲା । ସତରେ ଦିନେ ଶାଳିନୀକୁ ନେଇ ମିନାକ୍ଷୀ ପାଖରେ ପହଞ୍ଚିଲା ଅବିନାଶ । ଭୟରେ ଶାଳିନୀର ଛାତି ଥରୁଥିଲା । କାନ୍ଦି କାନ୍ଦି ସେ ମିନାକ୍ଷୀର ପାଦଧରି ପଡିଗଲା ।

ତଳୁ ଉଠାଇ ମିନାକ୍ଷୀ ସେଦିନ କହିଥିଲା - ଏମିତି କ'ଣ ହୁଏନି ? ଏଥିପାଇଁ ଏତେ କାନ୍ଦୁଛୁ କାହିଁକି ? ମନରେ ଦମ୍ଭ ଆସିଥିଲା ଶାଳିନୀର । ଭଙ୍ଗାରୁଜା ମନ୍‌ଟା ପୁଣି ଗଢି ଉଠିଥିଲା ।

ସଂସାରଟା କିଛିଦିନ ଦୁଃଖେ ସୁଖେ ଚଳିଗଲା । ଦିନେ ମିନାକ୍ଷୀ ଜାଣିବାକୁ ପାଇଲା ଶାଳିନୀ ମା' ହେବାକୁ ଯାଉଛି । ତା'ହୃଦୟର ସୁପ୍ତ ହିଂସ୍ର ପ୍ରକୃତି ଜାଗିଉଠିଲା ଆହତ ବ୍ୟାଘ୍ର ପରି ।

ହିଂସା, ଦ୍ୱେଷ, ଅହଂଭାବ ଓ ଅଭିମାନରେ ମିନାକ୍ଷୀର ମନ ଜଳି ଉଠିଲା । ଘରେ ଏଣିକି ଅଶାନ୍ତିର ନିଆଁ କୁହୁଳିଲା ।

ସବୁ କଥାରେ ଶାଳିନୀ ଚୁପ୍ ରହୁଥିଲା, କିନ୍ତୁ ମିନାକ୍ଷୀ ଚୁପ୍ ରହିବାକୁ ତ ବାଧ୍ୟ ନୁହେଁ । ଦଶଦିଗପାଳ ସାକ୍ଷୀରଖି ସେ ବାହା ହୋଇଛି ଅବିନାଶକୁ । ଚୁପ୍ ରହନ୍ତା କାହିଁକି ? କିନ୍ତୁ ଶାଳିନୀ ? ନା ବେଦୀ, ନା ମନ୍ତ୍ର, ନା ପୁରୋହିତ ? କିଏ ଥିଲା ଶାଳିନୀର ସାକ୍ଷୀ ? ଫୁଲମାଳଟିଏ ବ୍ୟତୀତ ଶାଳିନୀର କେହି ସାକ୍ଷୀ ନଥିଲେ ।

ଅବିନାଶ ଅନୁଭବ କଲା, ସତେ ଯେମିତି ଗୋଟିଏ ଯନ୍ତାରେ ଦୁଇଟି ଆହତ ବାଘୁଣୀ । ଗୋଟିଏ ହିଂସ୍ର, ଅନ୍ୟଟି ନିରୀହ । ଏକାଠି ବଞ୍ଚିବା ଏକାନ୍ତ ଅସମୀଚୀନ ।

ବହୁଚେଷ୍ଟା କରି ଅବିନାଶ ତା'ର ଜଣେ ବନ୍ଧୁଙ୍କୁ କୁହାକୁହି କରିବା ଦ୍ୱାରା ଶାଳିନୀ ଶିକ୍ଷୟିତ୍ରୀ ଚାକିରି ଖଣ୍ଡିଏ ପାଇଲା । ଯାହାହେଉ ଅବିନାଶ ଏଥର ଶାନ୍ତିରେ ନିଃଶ୍ୱାସ ମାରିଲା ।

ଶାଳିନୀର ଯେଉଁଦିନ ପୁଅଟିଏ ହେଲା, ସେଦିନ ଆନନ୍ଦରେ ଆତ୍ମହରା ହୋଇଥିଲେ ଅବିନାଶ । ସମୟ ପାଇଲେ କେବେ କେବେ ଅବିନାଶ ଶାଳିନୀ ପାଖକୁ ଯାଏ । ଆକାଶର ଚାନ୍ଦ ପରି ପୁଅଟି ସୁନ୍ଦର । ନାଆଁ ରଖାହେଲା ଚାନ୍ଦ୍ । ପୁଅକୁ ଭାରି ଭଲପାଏ ଅବିନାଶ । ମିନାକ୍ଷୀ ଶାଳିନୀ ଠାରୁ ବହୁ ଦୂରରେ ରହୁଥିବାରୁ, ଅବିନାଶର ଶାଳିନୀ ପାଖକୁ ଯିବା ଆସିବା ବିଷୟରେ କିଛି ଜାଣିବାର ଉପାୟ ନଥାଏ ।

ଅବିନାଶ ହୁଏତ ଶାଳିନୀକୁ ଅସ୍ୱୀକାର କରିପାରିବ, କିନ୍ତୁ ଚାନ୍ଦ୍‌କୁ ସେ କିପରି ଭୁଲିଯିବ ? ସ୍ୱୀକାର ନକରିବ କିପରି ?

ସମୟ ଚକରେ ଦିନ ଘୁରି ଚାଲେ । ସବୁର କିଛିନା କିଛି ପରିବର୍ତ୍ତନ ଘଟେ । ବ୍ଲକ୍ ଡେଭଲପ୍‌ମେଣ୍ଟ ଅଫିସର୍ ପଦରୁ ଅବିନାଶ ହେଲେ ଜଏଣ୍ଟ ସେକ୍ରେଟାରୀ । ଶାଳିନୀ ନିଜକୁ ଭାଗ୍ୟବତୀ ମନେକଲା । ଏଣିକି ତା' ନିଜ ଗାଡ଼ିରେ ଅବିନାଶ ତା' ପାଖକୁ ଆସେ । ଖୁସିରେ ଶାଳିନୀର ମନ ନାଚିଉଠେ ।

ସବୁଦିନ ତ ସମାନ ନଥାଏ, ଉତ୍ଥାନ ପତନ ଜୀବନର ଦୁଇଟି ପାହାଚ । ସରକାରଙ୍କ କଥା, ଆଜିର ନିୟମ କାଲିକି ବଦଳେ । ନୂଆ ନିୟମ ହେଲା, ଉଚ୍ଚପଦସ୍ଥ ସରକାରୀ କର୍ମଚାରୀମାନେ ଦୁଇଟି ବିବାହ କରିପାରିବେନି ।

ଅବିନାଶ ମୁଣ୍ଡରେ ସତେ ଯେମିତି ବଜ୍ରପାତ ହେଲା । ସେ ବହୁ ଚିନ୍ତା କରି ଦିନେ ମିନାକ୍ଷୀକୁ କହିଲା 'ତୁମେ ଘରେ ଏକାଟିଆ ରହୁଛ, ବିରକ୍ତ ହୋଇପଡୁଛ, ତେଣେ ଶାଳିନୀ ଚାକିରି ଜୀବନରେ ଛୋଟ ପିଲାଟାକୁ ନେଇ ବହୁଁ ଅସୁବିଧାର ସମ୍ମୁଖୀନ ହେଉଛି । ପୁଅର ଯତ୍ନ ଭଲ ଭାବରେ ନେଇ ପାରୁନି । ପୁଅକୁ ଏଠିକୁ ନେଇ ଆସିଲେ କେମିତି ହୁଅନ୍ତା କହିଲ ?''

ମିନାକ୍ଷୀ ମନେ ମନେ ଚିନ୍ତା କଲା । ତାକୁ ଦେଖିବାକୁ ଶେଷ ଜୀବନରେ କେହି ନାହିଁ, ଅବିନାଶ ଯାହା କହିଛନ୍ତି, ଭଲକଥା । ମିନାକ୍ଷୀ ପଚାରିଲା 'ଶାଳିନୀ ଛାଡ଼ିବ ତ ?'' ଅବିନାଶ କହିଲା, ଶାଳିନୀ ମୋ କଥାରୁ କେବେ ମଧ ବାହାରି ଯାଇନି ।

ପରଦିନ ସକାଳେ ଅବିନାଶ ବାହାରିଲା ଶାଳିନୀ ପାଖକୁ । ପହଞ୍ଚୁ ପହଞ୍ଚୁ ସନ୍ଧ୍ୟା । ଛୋଟ ସହରଟିରେ ବତୀ ଖୁଣ୍ଟର ବତୀ ସବୁ ଜଳି ଉଠିଲାଣି । ଶୀତ ରାତିର ଧୂଆଁଳିଆ ପବନ ଧକ୍କା ମାରୁଥାଏ ଅବିନାଶର ଛାତିକୁ । ଘରେ ପହଞ୍ଚିଲା ବେଳକୁ ଶାଳିନୀ ପୁଅକୁ ଧରି ଶୋଇବାକୁ ଯାଉଛି । ଅବିନାଶକୁ ଦେଖି ସେ ସତେ ଯେମିତି ଆକାଶର ଚାନ୍ଦ ପାଇଲା । ଅନେକ ପ୍ରକାର ରାନ୍ଧି ଥୋଇଲା, ଅବିନାଶ ଯାହାସବୁ ଭଲପାଏ । ଅବିନାଶ ଖାଇସାରି ଶୋଇବାକୁ ଗଲା ।

ଶୋଇଲା ଶେଯରେ ଅବିନାଶ ଶାଳିନୀକୁ କହିଲା - ''ତୁମେ ଚାକିରୀ ଜୀବନରେ ବାସ୍ତବିକ୍ ବଡ଼ ହଇରାଣ ହେଉଛ । ଏଇ ଛୋଟ ଛୁଆକୁ ଧରି ଘର, ବାହାର, ସବୁ କାମ ତୁଲାଇବା ପ୍ରକୃତରେ ସହଜ ନୁହେଁ । ଗୋଟାଏ କଥା କହିବି ଭାବି ତୁମକୁ ଆଜିଯାଏ କହି ନଥିଲି । ଚାନ୍ଦକୁ ମୁଁ ଯଦି ମୋ ପାଖରେ ରଖେ, ତେବେ ତୁମର କ'ଣ ଆପତ୍ତି ଅଛି କି ?''

ଶାଳିନୀ ମନେ ମନେ ଖୁସି ହେଲା । ତା'ପାଇଁ ଆପତ୍ତିର ପ୍ରଶ୍ନ ବା କାହିଁକି ଉଠିବ । ବରଂ ମନେ ମନେ ଶାଳିନୀ ଭାବିଲା, ପିଲାଟି ତା' ପାଖେ ଅବହେଳିତ ହେଉଛି । ଏମିତି ଛୋଟ ପରିସର ଭିତରେ ରହିଲେ ସେ କ'ଣ ଶିଖିବ ? ସମାଜରେ ପ୍ରତିଷ୍ଠା ଲାଭ କରିବା ପାଇଁ ଆଭିଜାତ୍ୟ ଆବଶ୍ୟକ । ଚାନ୍ଦ ଯାଉ, ସେଠି ଚାକର, ପୁଝାରୀ, ଗାଡ଼ି ମଟର - କେଉଁଥିରେ ଅଭାବ ନାହିଁ । ଭଲ ଘରର ପିଲା ବୋଲି ଗଣାହେବ । ପୁଣି ବଡ଼ ଲୋକର ପିଲା କହି ଲୋକଙ୍କ ଠାରୁ ଖାତିରି ପାଇବ ।

ସକାଳୁ ଉଠି ଶାଳିନୀ ଜଳଖିଆ କଲା । ପୁଅକୁ ଗାଧୋଇ ଦେଇ ଖୁଆଇ ଦେଲା । ସୁଟ୍‌କେସ୍‌ଟିରେ ତା'ର ସବୁ ଡ୍ରେସ୍ ସଜାଡ଼ି ଦେଲା । ଦି'ହଳ ଯୋତା ମୋଜା ଜରି ପ୍ୟାକେଟ୍‌ରେ ରଖିଲା ।

ନାଲି ଜାମାଟା ଚାନ୍ଦ୍‌କୁ ଭାରି ମାନେ । କିନ୍ତୁ ତାକୁ ସେଇଟା ଛୋଟ ହୋଇଗଲାଣି । ସେଇଟା ଦେଲାନି । ମନେ ମନେ ଭାବିଲା ଚାନ୍ଦ୍‌ର ଭାଇ କି ଭଉଣୀ ହେଲେ ସେଇଟା ପିନ୍ଧିବ । ପାଣି ବ୍ୟାଗ୍‌ଟା କାର୍‌ରେ ନେଇ ଥୋଇଲା ।

ସାବଧାନରେ ରହିବା ପାଇଁ ଶାଳିନୀକୁ ବାରମ୍ବାର ତାଗିଦା କରି ଅବିନାଶ ପୁଅକୁ ଧରି ଗାଡ଼ିରେ ବସିଲା । କଳା କାଚ ଭିତରୁ ପୁଅ ଶାଳିନୀକୁ ଟା.. ଟା.. କରୁଥିଲା । ଶାଳିନୀର ଛାତି ଫାଟି ଯାଉଥିଲା । ଆଖିରୁ ବହି ଯାଉଥିଲା ଅଶ୍ରୁର ଝରଣା । ସେ ଚାହିଁରହିଥିଲା ଆମ୍ବାସାଡର ଗାଡ଼ିର ଦ୍ରୁତଗତିକୁ, ସେମାନଙ୍କ ଯିବା ରାସ୍ତାକୁ .......

ଗ୍ରୀଷ୍ମ, ବର୍ଷା, ଶରତ, ବସନ୍ତ, ଶୀତ ଯାଇ ହେମନ୍ତ ଆସିଲା । ପରେ ଋତୁ ବିତିଗଲା । କିନ୍ତୁ ଅବିନାଶ ଆଉ ଆସିଲା ନାହିଁ । ଶାଳିନୀ କେତେ ଚିଠି ଅଫିସ୍ ଠିକଣାରେ ପଠାଇଲା, କେତେ ଖବର ଦେଲା, କିନ୍ତୁ କୌଣସି ଚିଠିର ଉତ୍ତର ମିଳିଲାନି ।

ଅବିନାଶ ପାଖକୁ 'ଶାଳିନୀ ଥରେ ଯାଇଥିଲା, କିନ୍ତୁ ଅବିନାଶ ଘରେ ନଥିଲେ । ଚାନ୍ଦ୍ ତା' ପାଖକୁ ଆସିଲାନି । ମିନାକ୍ଷୀକୁ ଜାବୁଡ଼ି ଧରିଲା । ଶାଳିନୀର ଛାତି ଫାଟିଗଲା । ସେ ବସ୍ ଧରି ଫେରିଆସିଲା ତା' ଚାକିରି କରୁଥିବା ଛୋଟ ସହରଟିକୁ । ସେଇଦିନୁ ସେ ଆଉ କେବେ ଅବିନାଶ୍ ପାଖକୁ ଯାଇନି । ଯିବାପାଇଁ ମନ ବି କରିନି କେବେ ।

ମନର ବନ ହୁହୁ ହୋଇ ଜଳିଲା । ମନ ପୋଡ଼ିଗଲା ସିନା କେହି ଜାଣି ପାରିଲେନି ତା'ର ଦୁଃଖ । ସମାଜରେ ତା'ର ସମ୍ମାନ ନାହିଁ । କିଏ

କହେ ବରଂ ବାହା ନ ହୋଇଥିଲେ ଭଲ ହୋଇଥାନ୍ତା । ଆଉ କିଏ କହେ ଯାହା ହେଉ ଶାଳିନୀର ବାଡ଼ୁଅ ଦୋଷଟା ତ କଟିଗଲା । ଆଉ କିଏ କିଏ କହନ୍ତି - ପୁରୁଷ ଜାତିଙ୍କର କ'ଣ ଭୁଲ୍ ? ସବୁ ଭୁଲ୍ ସ୍ତ୍ରୀ ଜାତିର ।

ଏଣିକି ଦୁଃଖରୁ ଆଞ୍ଜୁଳାଏ ପିଇ କୌଣସିମତେ ରାତିଟା କଟାଇ ଦିଏ ଶାଳିନୀ । କିନ୍ତୁ ସକାଳ ହେଲେ ଶହେ ମୁହଁରେ ଶହେ ପ୍ରଶ୍ନ । କେତେ କାହାକୁ ସେ ଉତ୍ତର ଦେବ । ତା' ନିଜ ପ୍ରଶ୍ନର ଉତ୍ତର ତ ସେ ଆଜିଯାଏ ପାଇନାହିଁ । ତା' ପୁଅ ତାକୁ ମା' ବୋଲି ଚିହ୍ନି ପାରିବ ତ ? ଶାଳିନୀ ଆଖିରୁ ଲୁହ ପୋଛେ ।

ହଠାତ୍ ପରମା କହିଲା 'ଅପା, କ'ଣ ରିକ୍ସାରେ ବସିଥିବ ? ହେଇ ପରା ତୁମ ଘର ! ଅନ୍ୟମନସ୍କ ହୋଇ ଶାଳିନୀ କହିଲା - 'ରଖ ରଖ ଏଇଠି ରିକ୍ସା ରଖ ।' ବଡ଼ ସିମେଣ୍ଟ ଚଉତରା ସାମ୍ନାରେ ରିକ୍ସା ରହିଲା ..........

କୋଠାଟି ବହୁ ପୁରୁଣା କାଳର । ଚାରିପାଖେ ମଣିଷେ ଉଚ୍ଚର ପାଚେରୀ । ପାଚେରୀରୁ ଠାଏ ଠାଏ ପଥର ଖସି ମେଲା ହେଲାଣି । ଉପର ମହଲା ଘରଗୁଡ଼ାକ ପ୍ରାୟ ଭାଙ୍ଗି ଗଲାଣି ।

ଅଗଣା ବାରଣ୍ଡାରେ ଶାଳିନୀ ଭି.ଆଇ.ପି. ସୁଟ୍‌କେସ୍‌ଟି ଥୋଇ ମାମାଙ୍କ ବେଡ୍‌ରୁମ୍ ଭିତରକୁ ପଶିଗଲା । ଖଟ ଉପରେ ଶୋଇଥିଲେ ମାମା । ଭାରି ଦୁର୍ବଳ, ତାଙ୍କୁ ଚିହ୍ନି ହେଉନଥିଲା । ଶାଳିନୀର ଆଖିରେ ଲୁହ ଜକେଇ ଆସିଲା ।

ଶାଳିନୀର ବାପା ବୋଉ ମଲାପରେ ଏଇ ମାମା ତାଙ୍କୁ କେତେ ଆଦରରେ ପାଳିଥିଲେ । ମାମା ଏମିତି ନଥିଲେ । ତାଙ୍କ ଦେହର ରଙ୍ଗ ଥିଲା ଖୁବ୍ ଗୋରା । ନିତି କାନ୍ତି ସବୁ ତାଙ୍କର ଅଲଗା । ଚାକର ପୂଝାରୀ ଠାରୁ ଆରମ୍ଭ କରି ଦାଦା ବଡ଼ବାପା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଖାତିରି କରନ୍ତି ।

ଏବେ ଆଉ କେହି ନାହାନ୍ତି ଗାଁରେ । ପୁଅ ପୁତୁରା ସମସ୍ତେ ଚାକିରିଆ, ସମସ୍ତେ ବାହାରେ ।

ମାମାଙ୍କ ପାଦ ଛୁଉଁ ଛୁଉଁ ସେ ଉଠି ବସିଲେ । ଶାଳିନୀକୁ କୁଣ୍ଢାଇ ପକାଇ କହିଲେ - 'ତୁ ଖାଁଇଲୁଣି ?' ମାମାଙ୍କର ଏବେ ବି ସେଇ କଥା । ଘରେ ଚାକର ବାକରଙ୍କ ଠାରୁ ଆରମ୍ଭ କରି ମୁରବି ପର୍ଯ୍ୟନ୍ତ ସମସ୍ତଙ୍କ ଖାଇବା କଥା ସେ ନିଜେ ବୁଝନ୍ତି । ସେମିତିକା ମଣିଷଟିଏ ଆଜି ମିଳିବା ସହଜ ନୁହେଁ ।

ଶାଳିନୀ ମାମାଙ୍କ ପାଖରେ ଖଟ ଉପରେ ବସିଥିଲା । ଭାଉଜ ତାଙ୍କର ଗଜଗମନି ଚାଲି ପକେଇ ଆସି ପହଞ୍ଚିଲେ । ସେମିତି ଉପୁରିଆ ସୁନ୍ଦର ଚିକ୍କଣ କଥା ଏବେ ବି ଅଛି । ସବୁଦିନେ ସେଇ ଗୋଟିଏ ପ୍ରଶ୍ନ - "କେବେ ଯାଉଛୁ ?"

ଶାଳିନୀର ବି' ଚାରିଦିନ ଅଧିକା ରହିବା ପାଇଁ ଇଚ୍ଛା ଥିଲେ ମଧ ସେ ରହେନା । ତିନି ଦିନରୁ ଅଧିକା ହେଲେ ଭାଉଜଙ୍କ ମୁହଁ ଶୁଖିଯାଏ । ପାଣି ବିନା ମାଛ ପରି ଫକ୍ ଫକ୍ ହୁଅନ୍ତି ।

ମାମାଙ୍କ ସେବାରେ ଶାଳିନୀର ତିନି ଚାରିଦିନ କୁଆଡ଼େ କଟିଗଲା, ଜଣା ପଡିଲାନି । ମାମା ଯେତେ ବାଧ କଲେ ମଧ ଶାଳିନୀ ରହିବାକୁ ମଙ୍ଗିଲା ନାହିଁ । ଚତୁର୍ଥ ଦିନ ମାମାଙ୍କ ଠାରୁ ବିଦାୟ ନେଇ ଭାଉଜଙ୍କୁ ନମସ୍କାର କରି ଗାଁ ମୁଣ୍ଡ ପାଦଚଲା ରାସ୍ତାରେ ଆଗକୁ ଚାଲିଲା ଶାଳିନୀ ।

ଆଖିରେ ଆଖିଏ ଲୁହ, ଛାତିରେ ଛାତିଏ କୋହ ନେଇ ବିନୋଦ ବିହାରି ଛକରୁ ଶାଳିନୀ ବସ୍ ଚଢିଲା ।

ତା' ମନ ଜଳନ୍ତା ନିଆଁରେ ଜଳୁଥିଲା । ନିଜ କର୍ମକ୍ଷେତ୍ରରେ ପହଞ୍ଚି ଆଖିରୁ ଲୁହ ପୋଛିଲା । ଘର କବାଟର ତାଲା ଖୋଲୁ ଖୋଲୁ ଶାଳିନୀ ଭାବିଲା, ଏଇଟା ହିଁ ତା'ପାଇଁ ସବୁଠୁ ଶାନ୍ତିର ଜାଗା । କିଛି ନଥିଲେ ବି ପରାଧୀନତା ଏଠି ନାହିଁ ।

# ବାଲିଘର

ଦେଉଳିଆ ଗାଁ ପଛପଟେ ପାଦଚଲା ରାସ୍ତାଟାଏ, ଲମ୍ବିଛି ଅନେକଦୂର । ରାସ୍ତାଟା କିଛିବାଟ ବଙ୍କେଇ ଯାଇ ପାହାଡ଼ କଡ଼ ଝରଣା କୂଳେ କୂଳେ ପଧାନ ପଡ଼ା ଗାଁ ଭିତରକୁ ପଡିଛି ।

ପଧାନପଡ଼ାକୁ ଲାଗି ଲଙ୍କାଆମ୍ବ ବଣ । ବଣକୁ ଲାଗି ଯେଉଁ ଲଣ୍ଡା ପାହାଡ଼ଟା ଆକାଶ ଛୁଇଁ ଠିଆ ହୋଇଛି, ତାକୁ ଦେଖିଲେ ଡର ମାଡ଼େ । ଖରାଦିନେ ପାହାଡ଼ଟା ତାତିଯାଏ । ପାହାଡ଼ ତଳେ ଝାଞ୍ଜି ପବନ ବହିଲା ବେଳେ, ସତେ ଯେମିତି ନିଆଁ ଝୁଲ ଖସିପଡ଼େ ।

ଏଇ ପାହାଡ଼ର ପୂର୍ବପଟେ ପ୍ରଧାନପଡ଼ା ଗାଁ । ସେଇ ଗାଁର ଅଲେଖ ପଧାନର ପୁଅ ନିତେଇ । ପାଞ୍ଚହାତିଆ ମଜ୍‌ଭୂତ୍ ମରଦଟାଏ କେବେ କେବେ ବଣକୁ କାଠହାଣି ଯାଏ । ଆଉ କେବେ ବିଲକୁ ଯାଏ ହଳନେଇ । ଝାଞ୍ଜି ଖରାରେ ବେଳେବେଳେ ଦିନ ଦି'ପହରେ ନିତେଇ ଲଟା ବଣ ତଳେ ନିଘୋଡ଼ ନିଦରେ ଶୋଇଯାଏ । ବଣ ଭିତରେ ନିତେଇ କି ଶୋଇଥିବାର ଦେଖିଲେ ରମଣୀର ଛାତିଟା ଥରିଯାଏ । ମନରେ ଛନକା ପଶେ । କେବେ କେବେ ପାଖକୁ ଯାଇ ନିତେଇର ନିଦୁଆ ମୁହଁଟାକୁ ଚାହିଁ ରହେ ରମଣୀ । ତା'ର କଅଁଳିଆ ପାପୁଲିରେ ଆଉଁସି ଦିଏ ନିତେଇକି । ନିତେଇ ଛାନିଆରେ ଧଡ଼ପଡ଼ ହୋଇ ଉଠିବସେ ।

ନିତେଇର ଲମ୍ବା ଲମ୍ବା ଆଖି, ଓସାର ଓଠ, ଆଉ ବଳିଲା ବଳିଲା ହାତଗୋଡ଼ । ଯିଏ ଦେଖିଲେ ଖୁଣି ଦେବ । ଖାଲି ସେତିକି ନୁହେଁ, ଘଡ଼ିଏ ଅନେଇବ ।

ଦିନ ଦି' ପହରେ ରମଣୀ କି ଦେଖି ନିତେଇ ଆଶ୍ଚର୍ଯ୍ୟ ହୁଏ ।

ତା' ଦେହରେ ଗୋଟାଏ ଅଜଣା ଶୀହରଣ ଖେଳିଯାଏ । ଏତ ନୁଆ କଥା ନୁହେଁ । ଏମିତି ପ୍ରାୟ ସବୁଦିନ ରମଣୀ ଦି'ପହରେ ତା ପାଖକୁ ଆସେ । ସବୁଦିନେ ତା'ର ସେଇ ଗୋଟିଏ ପ୍ରଶ୍ନ - ''ତୁ କହୁନୁ, ମତେ ବାହା ହେଲେ ତୋର କ'ଣ ଅସୁବିଧା ହେବ ? ଚୁପ୍ ରହୁଛୁ କାହିଁକି ମ ? କହୁନୁ ନିତେଇ ଭାଇ, ମୁଁ କ'ଣ ସୁନ୍ଦର ନୁହେଁ ? କହୁନୁ ? ମତେ ବାହା ହବୁଟି ?

ପ୍ରଶ୍ନଟିର ଉତ୍ତର ଦେଇପାରେନା ନିତେଇ । କ'ଣ ତାକୁ କହିବ ? କି କାରଣ ଦେଖାଇ ବାହା ନହେବା ପାଇଁ ଯୁକ୍ତି ବାଢିବ ? ଅଡୁଆରେ ପଡ଼େ ନିତେଇ । ଦିନେ ଅଧେ ନୁହଁ, ସବୁଦିନେ ତ ଦେଖା । ଠିକ୍ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ ରମଣୀ କୋଉଠି ଥିବ, ଜଙ୍ଗଲ କଡ଼େ କଡ଼େ ଲୁଚି ଲୁଚି ଆସି ପହଞ୍ଚିଯିବ ।

ତାକୁ ଦେଖିଲେ ନିତେଇର ଛାତିଟା ଧଡ଼ପଡ଼ ହୁଏ । ରମଣୀ ମୁହଁକୁ ଘଡ଼ିଏ ଚାହିଁରହେ । ଛନ୍‌ଛନିଆ ତା'ର ଦିହ, ଆଖି ଦୁଇଟା ଯେମିତି କଥା କହୁଛି । ଓଠରେ ପଳାସ ଫୁଲର ରଙ୍ଗ । ମନରେ ତା'ର ଯେତେ ଶୋଷ, ଝରଣାର ସବୁ ପାଣି ପିଇଲେ ବି ସେ ଶୋଷ ମରିବନି ।

ରମଣୀ ଯେତେବେଳେ ବାହାଘରର କଥା ଆରମ୍ଭ କରେ ନିତେଇ ତା'ର ବଳିଷ୍ଠ ବାହୁ ଦୁଇଟିରେ ରମଣୀ କି ଭିଡ଼ିଧରି କହେ - ''ଆଲୋ ଭଲ ପାଇଗଲେ କ'ଣ ବାହାଘର ହୋଇଯାଏ ? ବାହାପାଇଁ କେତେ ପଇସା କେତେ ଯୋଗାଡ଼, ପୁଣି କେତେ ବନ୍ଧୁ ବାନ୍ଧବଙ୍କୁ ଲୋଡ଼ା । ବାୟାଣିଟା ଖାଲି ବାହାହବୁ ବାହାହବୁ ହଉଛୁ । ବାହାହେଲେ କ'ଣ ହୁଏ ଜାଣିଛୁ ?'' ଲାଜରେ ରମଣୀ ନିତେଇ କୋଳରେ ମୁହଁ ଲୁଚାଇ ଦିଏ ।

ମନେ ମନେ ରମଣୀ ଭାବେ କେବେ ସତେ ସେ ଦିନ ଆସିବ । ସେ ଅଲେଖା ପଧାନ ଘରେ ବୋହୂ ହେବ । ନିତେଇ ଭାଇ କେବେ ତାକୁ ବାହା ହେବାକୁ ମଙ୍ଗିବ କେଜାଣି । ଯେତେବେଳେ ପଚାରିଲେ ତ ଏଣୁ

ତେଣୁ କହି ଭୁଲେଇ ଦଉଛି । ରମଣୀର ମନଟା ଛକ୍‌ପକ୍ ହୁଏ । ବେଳ ଲେଉଟିଲେ ସେ ଘରକୁ ଫେରିଆସେ ।

ଅଲେଖ ପଧାନର ସେଇ ଗୋଟାଏ ବୋଲି ପୁଅ ନିତେଇ । ନାଁ ତା'ର ନିତ୍ୟାନନ୍ଦ । ଶ୍ରଦ୍ଧାରେ ସାଙ୍ଗ ସାଥୀଙ୍କ ଠୁ ଗାଁ ଲୋକଯାଏ ସମସ୍ତେ ଡାକନ୍ତି ନିତେଇ । ହଳରୁ ଆସିଲେ ସେ ଦି କଂସା ଭାତ ଖାଏ । ଠେକିଏ ପାଣି ପିଏ । ଦି ଗିନା ତୁଣ ତରକାରୀ ନ ଥିଲେ ନିତେଇ ଭାତ ପାଖେ ବସେନା ।

ନିତେଇ ମା' କୋକିଳ ଗାଁ ଯାକର ନାନୀ । କୋକିଳ ନାନୀ ପୁଅର ମୁଣ୍ଡ ଆଉଁସି ଦେଇ କହେ - ''ମୋ ପିଲା କିଛି ଖାଉନି । ନଖାଇ ନ ଖାଇ ଶୁଖିଗଲାଣି । କଳାକାଠ ପଡିଗଲାଣି । ଚୁନାମାଛ ଦି'ଟା ବେସର ନହେଲେ ନିତିଆର ଖାଇବାଟା ସେମିତି ସେମିତି ।''

କୋକିଳ ନାନୀ କଥା ଶୁଣି ସମସ୍ତେ ଚୁପ୍ ରହନ୍ତି । ଏପରିକି ନିତେଇ ଖାଇବା କଂସା ପାଖରେ ବସିଥିବା ସାଙ୍ଗସାଥୀ ବି କିଛି କହନ୍ତିନି । ଦି କଂସା ଭାତ ଖାଇସାରି ନିତେଇ ଯେତେବେଳେ ହେଉଡ଼ି ମାରିଉଠେ କୋକିଳ ନାନୀ କହେ, ''ହଇରେ ଚଗଲା, ଦି'ଗୁଣ୍ଡା ଭାତ ଖାଇ ଉଠିଗଲୁ ? ଆଉ ମୁଠାଏ ଖାଇ ନଥାନ୍ତୁ ? ନ ଖାଇ ନଖାଇ କେମିତି ହେଲୁଣି - ଜାଣି ପାରୁନୁ ?'' ଏକଥା ଯିଏ ଶୁଣେ ସିଏ ହସେ । ହେଲେ କୋକିଳର ତ ମାଆ ମନ । ସେ କଥା କିଏ ବୁଝିବ ?

ସେ ବର୍ଷ ପଣା ସଂକ୍ରାନ୍ତି । ବାଙ୍କି ଚର୍ଚ୍ଚିକା ଠାକୁରାଣୀ ଠେଇ ଝାମୁ ଚାଲିବେ । ପଧାନ ପଡ଼ାରୁ ନିତେଇ ଯାଇଥାଏ । ଗତବର୍ଷ କଥା ଏବେବି କେହି ଭୁଲିନାହାନ୍ତି । ଡହଡହ ନିଆଁ ଉପରେ ଏମୁଣ୍ଡରୁ ସେମୁଣ୍ଡ ଯାଏ ଚାଲି ଯାଉଥାଏ ନିତେଇ । ସମସ୍ତେ ଠାକୁରାଣୀଙ୍କୁ ଓଳଗୀ ହେଉଥାନ୍ତି ।

ଧନ୍ୟ ମା ଚର୍ଚ୍ଚିକା ! ଭାରି ପ୍ରତ୍ୟକ୍ଷ ଠାକୁରାଣୀ । ଡାକିଲେ 'ଓ' କରେ । ସେ କଥା ଜଗତ ଜାଣେ । ନିତେଇର ଭକ୍ତି ଦେଖି ଲୋକେ ଧନ୍ୟଧନ୍ୟ କରୁଥାନ୍ତି । ପାଞ୍ଚହାତିଆ ମରଦ, କଳାମିଚିମିଚି ଦେହ । କୋଉ କଥାକୁ ଭୟ ନାହିଁ । ହାତୀ ପଡିଲେ ଲଢିବ । ସବୁ କଥାରେ ଆଗୁଆ । ଝାମ୍ପୁଲା ଚୁଟି ମୁଠାଏ ତା' ମୁହଁ ଉପରକୁ ପଡିଥାଏ । ସେତକ ତାକୁ ଭାରି ମାନେ । ବାହା ଦି'ଟା ବରଗଛର ଗଣ୍ଡିପରି । ପଡ଼ାରେ ଏମିତି ଟୋକାଟାଏ ଆଉ ନାହିଁ ।

ସେଦିନ ସକାଳ । ଡିମିରି ଗଛ ଉପରେ ଶଙ୍ଖଚିଲଟା ବସିଥାଏ । ପିଲାମାନେ ହୁସ୍ ହୁସ୍ କରୁଥାନ୍ତି । ବଡ଼ ପାଟି କରି କୋକିଳ ଉଷ୍ଣି ଉଠିଲା । କହିଲା - 'ମଲା ମୋର ଶଙ୍ଖଚିଲ ଦେଖିଲେ ପରା ଶୁଭ, ତାକୁ ଉଡ଼େଇ ଦଉଚ କାହିଁକିରେ ଅଲକ୍ଷଣା ?'

ଏମିତି ଟିକିଏ ଟିକିଏ କଥାରେ ଯାହାକୁ ମନ ତାକୁ କୋକିଳ ଗାଳିଦିଏ । କେହି ତାକୁ କିଛି କହନ୍ତିନି । ନିତେଇର ମା' ବୋଲି ସମସ୍ତେ ତାକୁ ଡରନ୍ତି । କୋକିଳ ରାସ୍ତାରେ ଛାତି ଫୁଲେଇ ଚାଲେ । ତା' ଗିରସ୍ତ ହୋଇ ବି ଅଲେଖା ତାକୁ କିଛି କହିପାରେନି । କ'ଣ କହିବ ? କୋକିଳ ତାକୁ ମାନିଲେତ ? କହି କି-ଲାଭ ।

କୋକିଳ ମା' ଘରଥିଲା ତିନିବାଟି ସମ୍ପତ୍ତି । ବାପା ତା'ର ଅଫିମ ଖାଇ ସବୁ ଉଡ଼େଇ ଦେଲା । କିନ୍ତୁ ସେଥିପାଇଁ କୋକିଳର କେବେ ବି ଦୁଃଖ ନଥାଏ । ବାପା ହେଉ ମା' ହେଉ, ଯିଏ ହେଉ, ଆପଣା ଅର୍ଜ୍ଜିଲା କର୍ମ ଫଳତ ନିଶ୍ଚୟ ମିଳିବ । ଆଜି ନହେଲେ କାଲି । ଯିଏ ଯେମିତି କରିବ ସିଏ ସେମିତି ପାଇବ ।

କିନ୍ତୁ ଅଲେଖାର ମଦନିଶା କୋକିଳ ଛଡ଼େଇ ଦେଲା । ଯେଉଁଦିନ ପହିଲିଥର ମଦ ପିଇ ଅଲେଖା ରାତିରେ ଘରକୁ ଆସିଲା, ସେଦିନ

କୋକିଳ ଏମିତି ଗୋଗଛବାଡ଼ିଆ ବାଡ଼େଇଲା ଯେ, ଅଲେଖା ଏକାଥରକେ ଥଣ୍ଡା ।

ତିରିଶିବର୍ଷ ହେଲାଣି । ଅଲେଖା ଆଉ ଜୀବନରେ ମଦ ପିଇନି । ମଦ ତ ମଦ, ଭାଙ୍ଗ ଗଞ୍ଜେଇର ନାଁ ବି ସେ ସେହିଦିନୁ ଆଉ ଧରିନି । ସେବେଠୁ କୋକିଳ ଯାହା କହେ ସେଇୟା କରେ । ଗାଁରେ ସମସ୍ତେ କହନ୍ତି କୋକିଳ ପରି ସ୍ତ୍ରୀ ନଥିଲେ ଦଣ୍ଡାବାଳୁଙ୍ଗା ଅଲେଖାକୁ ସମ୍ଭାଳିଥାନ୍ତା କିଏ ? ଆଉ କିଏ କିଏ କହନ୍ତି - ଏମିତି ଭୁଲ୍ କରିବ କାହିଁକି, ସ୍ତ୍ରୀଠୁ ଖଡୁ ମୁଷା ଖାଇବ କାହିଁକି ? ମରଦ ପିଲା ନିଜେ ଠିକ୍ ରହିଲେ ଭଲ ।

ସେଦିନ ସଞ୍ଜ ଗଡ଼ି ଯାଇଥାଏ । ରମଣୀ ବଡ଼ପୋଖରୀ ହିଡ଼େ ହିଡ଼େ ଗାଁ ଆଡ଼କୁ ମୁହାଁଇ ଥାଏ । ନିତେଇ କୋଦାଳଟା କାନ୍ଧରେ ପକେଇ ହଠାତ୍ ତା' ଆଗରେ ଠିଆ ହୋଇଗଲା । ଚମକି ପଡି ରମଣୀ ଖଣ୍ଡେ ଦୂରକୁ ଡେଇଁ ପଡି କହିଲା - ମଲା ମଲା ତୁ ଇଆଡ଼େ କୁଆଡ଼େ ବା ? ନିତେଇ କହିଲା - 'ତୁ ଯୁଆଡ଼େ ବା ।' ରମଣୀ ହସି ପକେଇଲା । ଏଇ ହସ ଟିକକ ପାଇଁ ନିତେଇ ପାଗଳ । ରମଣୀର ହସ ତାକୁ ଭାରି ଭଲ ଲାଗେ ।

ରମଣୀ ପାଟିରୁ ପଦ୍ମଫୁଲର ବାସ୍ନା ବାହାରେ । ଦେହରୁ ହେନା ଫୁଲର ମହ ମହ ଗନ୍ଧ । ତା' ଦେହକୁ ନିର୍ବାକ୍ ଭାବରେ ନିତେଇ ସେଦିନ ଅନେଇ ରହିଥିଲା । କେଡ଼େ ସୁନ୍ଦର ସତେ ରମଣୀଟା ! ମୁଣ୍ଡର ବାଳଗୁଡ଼ାକ ନୀଳ ସମୁଦ୍ରର ଗଭୀର ଜଳ ପରି କଳା । ଆଣ୍ଠୁତଳ ଯାଏ ଲମ୍ବିଥାଏ ବାଳଗୁଡ଼ାକ, ରମଣୀର ଲାଲ୍ ଲାଲ୍ ଗାଲ ଦି'ଟା ଜରି ଝାଲେରୀ ପରି ଚିକ୍ ଚିକ୍ ଦିଶେ । ନିତେଇ ସମ୍ଭାଳି ପାରେନା । ତା'ର ମନ ହୁଏ ରମଣୀକୁ କୋଳକୁ ଟାଣି ଆଣନ୍ତା । ତା' ଛାତିରେ ଛାତିକି ମିଶେଇ ଦେଇ ଦୁନିଆଟାକୁ ଭୁଲି ଯାଆନ୍ତା । କିନ୍ତୁ ମନରେ ଲଗାମ୍ ବାନ୍ଧେ ନିତେଇ ।

ଏ କ'ଣ ସେ ଭାବୁଛି ? ପାପ, ଭାରି ପାପ କଥା । ଏମିତି ଭାବିବା ମୋଟେ ଠିକ୍ ନୁହେଁ । ଅନେକଥର ନିତେଇ ନିଜ ମନକୁ ବୁଝେଇ ଦେଇଛି । ମଣିଷ ମନଟା ସତେ କ'ଣ ନ ଚାହେଁ ? କିନ୍ତୁ ଯାହା ଚାହେଁ, ତା' କ'ଣ ଏତେ ସହଜରେ ମିଳିଯାଏ ? ଏଡ଼େବଡ଼ ଦୁନିଆଟାରେ ନିତେଇ ଦେଖେ ମା' ଛଡ଼ା ତା'ର କେହି ନାହିଁ । ମା'କୁ ନ ପଚାରି ସେ କେବେ କେଉଁଠି କିଛି ବି କରିନି । ତା' ମା ତା'ର ସବୁ । ସେ ଯଦି କିଛି ଅଘଟଣ କରିବସେ, ଗାଁ ଲୋକେ ତାକୁ କ'ଣ କହିବେ ? ସେ ଲୋକଙ୍କୁ ମୁହଁ ଦେଖେଇ ପାରିବ ତ ? ନା, ନା, ସେ ରମଣୀକୁ ଏତେ ଭଲପାଏ । ତାକୁ କେବେ ବି ବଦ୍‌ନାମ ହେବାକୁ ଦେବନି । ରମଣୀ ତ ତା'ର, ସେ ତ ରମଣୀର । ତେବେ ଏତେ ଛାନିଆ ହବ କାହିଁକି ? ମନଟାକୁ କ'ଣ ସମ୍ଭାଳି ନେଇ ପାରିବନି କେଇଟା ଦିନ ପାଇଁ ? ପରଝିଅ ସିଏ । କାଲିକି ନିତେଇର ଘରଣୀ ହୋଇ ଆସିବ । ଆଗରୁ ସବୁ ସାରିଦେଲେ ଆଉ କ'ଣ ନୂଆ କଥା ଥିବ ଯେ, ରମଣୀ ତାକୁ ଦବ ? ଏସବୁ ଭାବି ନିତେଇ ଦୂରରେ ଠିଆହୁଏ । କିନ୍ତୁ ରମଣୀ ମୁହଁ ଓହଳି ପଡ଼େ । ମନେ ମନେ ଭାବେ ପାଞ୍ଚହାତିଆ ମରଦଟା ଯେ ଟିକିଏ ବି ମନ ହୁଏନା ? ଏକୁଟିଆ ବିଲ ମାଳରେ, ପୋଖରୀ କୂଳରେ, କେବେ ବି କ'ଣ ମଣିଷର ମନ ହେବନି ? ତା' ସାଙ୍ଗମାନେ, ପଚାରିଲେ ରମଣି ମୁହଁ ମୋଡ଼ିଦେଇ କହେଁ 'ନାଇଁ ଲୋ, କେବେ ବି କିଛି ନାହିଁ, ନିତେଇ ଭାଇଟା ଭାରି ବେରସିକା ବା ।'' ଦିହେଁ ହସନ୍ତି । ମାଳ ଗତସାଲେ ବାହାହୋଇ ଏ ସାଲେ ପୁଅଟିଏ । ଦିହେଁ ଏକା ବଅସର । ରମଣୀ ମନଟା କେମିତି କେମିତି ହୋଇଯାଏ ।

ଦିନେ ମୁଣ୍ଡିଆ ତଳ ଥୁଣ୍ଟା ବରଗଛରୁ କାଠ କାଟୁଥିଲା ନିତେଇ । ରମଣୀ ଏକୁଟିଆ ଯାଇ ସେଇଠି ପହଞ୍ଚିଲା । ନିତେଇ ଦେହକୁ ଲାଗି ଠିଆ ହେଲା । ନିତେଇ ଟିକେ ହସିଦେଇ କହିଲା - ''ତୁ ଏମିତି ତରତର

କାହିଁକି ହଉଚୁ କିଲୋ ? ମୁଁ ପରା ତତେ ବାହାହୋଇ ମୋ ଘରକୁ ଆଣିବି ? ଏଇନେ ତୁ ପରଝିଅ । ଲୋକେ କ'ଣ କହିବେ ? ଟିକିଏ ଧୈର୍ଯ୍ୟ ଧର ।'' ଉଦୁଉଦିଆ ଖରାବେଳଟା କେହି କୁଆଡ଼େ ନଥିଲେ । ମୁଣ୍ଡିଆ ତଳ ନଦୀ ଧାରରୁ ଦି'ଟା ଗାଈ ପାଣି ପିଉଥିଲେ । ତାଙ୍କରି ଆଡ଼କୁ ବୁଲି ବୁଲି ନିତେଇ ଚାହୁଁଥାଏ । ରମଣୀକି ଭାରି ହସ ମାଡ଼ିଲା । ସେ ମୁହଁରେ ଲୁଗା ଦେଇ ହସି ହସି ସେଠୁ ପଳାଇ ଆସିବା ବେଳକୁ ନିତେଇ ଲୁଗାକାନିକି ଭିଡ଼ି ଧଇଲା, କହିଲା ''କାହିଁକି ହସିଲୁ କହିବୁନି ?'' ମଲା ମୋର କାହିଁକି ହସିଲି କ'ଣ କହିବି ବା ? ରମଣୀର ହାତ ପାପୁଲି ଦି'ଟାକୁ ନିତେଇ ଚିପି ଧରିଲା । କେତେ ଉଷୁମ୍ ରମଣୀର ହାତଟା ସତେ !! ହଠାତ୍ କ'ଣ ଭାବି ନିତେଇ ହାତ ଦି'ଟା ଛାଡ଼ିଦେଲା । ରମଣୀ କହିଲା 'ଏଇଥିପାଇଁକି ହସୁଥିଲି, ଏଠି କିଏ ଅଛି ଯେ ତୁ ଏତେ ଡରିଯାଉଛୁ ? ଲୁଚିଛପି ଏମିତି କେତେଦିନ ଆଉ ଚାଲିବ ?' ନିତେଇ କହିଲା - ''ଦେଖ୍ କାଲି ଆମ ବାହାଘର କଥା ତୋ ବାପା ପାଖକୁ ଖବର ଦେବି । ଏଥର ଖୁସି ତ ?'' ରମଣୀ ମୁହଁରେ ହସ ଖେଳିଗଲା । କେତେ ଆଶା କେତେ ସ୍ୱପ୍ନ - ସବୁ ତା ମନ ଭିତରେ ଢେଉଁ ଉଠିଲେ । ମନଖୁସିରେ ରମଣୀ କହିଲା ''ବେଳ ବୁଡିଲାଣି, ଏଥର ମୁଁ ଯାଉଛି ।'' ତା' ଚଲାବାଟକୁ ନିତେଇ ଚାହିଁ ରହିଲା ।

ରମଣୀ ଘରେ ପହଞ୍ଚି ହଳଦୀ-କାଠୁଆରେ ମେଞ୍ଚାଏ ହଳଦୀ ନେଇ ବାଡ଼ି ପଛପଟ ସଜନା ମୂଳେ ଦେହ ସାରା ବୋଳିଲା । ଆଉ କେତେଟା ଦିନ କି ? ଖୁଡ଼ି କ'ଣ ନିତେଇ ଭାଇନାକୁ ଯୋଇଁ କରିବାକୁ ମନା କରିବ ? ଆଉ, ଦାଦୀ ତ ନିତେଇ ନିତେଇ ବୋଲି ଭାରି ଭଲପାଏ । ସେ ଜମାରୁ ନାହିଁ କରିବନି । ସେ ଯୋଉଦିନ ବୋହୂ ହୋଇଯିବ, ଓଢଣା ଦେଇ ଚଉଠି ରାତିରେ ବସିଥିବ । ନିତେଇ ଭାଇଡ଼ା ଆସି ହଠାତ୍ କବାଟ ଖୋଲିଦେବ । କେତେ ଲାଜ ମାଡ଼ିବ ତାକୁ । ସେ

ଆଗ ମୋତେ କଥା କହିବନି । ଖାଲି ଥରୁଟିଏ ପଚାରିବ "ତୁ ପରା ମତେ ଛୁଉଁ ନଥିଲୁ, ଆଉ ଆଜି କେମିତି ଏଠିକି ଆସିଛୁ ?" ସବୁବେଳେ ତ ଦୂରେଇ ରହୁଥିଲୁ, ଆଜି ଲାଜ ମାଡୁନି । ମନେ ମନେ ରମଣୀ ହସି ପକାଇଲା । ରତନି ସେଦିନ ମଲ୍ଲୀଫୁଲ ମାଳଟିଏ ଦେଇଯାଇଥିଲା । ରମଣୀ ସେଇଟିକି ଖୋସାରେ ଲଗାଇ ପକାଇଲା । ମୁହଁରେ ବହଳେ ମୋଟର ପାଉଡର ଲଗେଇ ଦର୍ପଣ ଆଣି ମୁହଁ ଦେଖିଲା । ସତରେ ସେ କେଡ଼େ ସୁନ୍ଦର ଦିଶୁଛି । ଏଥିପାଇଁ ତାକୁ ନିତେଇ ଭାଇନା ଏତେ ଭଲପାଏ । ଦେହଟା ତା'ର ଶିହିରୀ ଉଠିଲା । ମୁହଁଟା କେଜାଣି କାହିଁକି ଲାଲ୍ ପଡିଗଲା ।

ସେଦିନ ମଙ୍ଗଳବାର । ନରି ସାହୁ ଅଲେଖ ଘର ସାମ୍ନାରେ ଠିଆ ହୋଇ ଅଲେଖାକୁ କ'ଣ ଫୁସ୍‌ଫୁସ୍ କରି କହିଲା । ତା' କଥା ଶୁଣି ଅଲେଖା କହିଲା । "ଆରେ ମତେ କ'ଣ କହୁଛୁ କୋକିଳ ଭାଉଜକୁ କ'ଣ ଜାଣିନୁ ? ତାକୁ ଆଗ ପଚାର । ସେ କ'ଣ କହୁଛି । ତା'ର ଯୋଉଠି ମନ ତା'ପୁଅକୁ ସେଇଠି ବାହା କରିବ । ମୋ କଥା ସିଏ କେବେ ଶୁଣିଛି ନା ଶୁଣିବ ? ନରି ସାହୁ ଭାବିଲା ବାପା ମା' ଛେଉଣ୍ଡ ପିଲାକୁ କୋକିଳ ଭାଉଜ କ'ଣ ବୋହୁ କରିବାକୁ ମଙ୍ଗିବ ? ରମଣି ଦାଦା ଖୁଡିଙ୍କ ପାଖେ ପିଲାଟି ଦିନୁ ବଢିଛି । ଅଭାଗିନୀର ବାପ ଅଛି ନା ମା' ଅଛି । ବଡ଼ ହେଲାରୁ ଖୁଡି କହେ ଝିଅଟିଏ ପରଘରକୁ ଦେଇ ଦଉନା କାହିଁକି ? ଦାଦା କହେ କ'ଣ ଖେଳ ଘର ଲାଗିଛି ? ବରଘର ଆସିଲେ ସିନା ?

ଏମିତି ଦେଖୁ ଦେଖୁ ଝିଅକୁ ଷୋଳ ପୁରି ସତର ପଶିଲାଣି । ନରିଆ ମନେ ମନେ ଭାବିଲା ଥରେ କୋକିଳ ନୂଆବୋଉଙ୍କୁ ପିଚାରି ଦେଖେ । କ୍ଷତି କ'ଣ ?

ସେଦିନ ନରିସାହୁ ଅଲେଖାର ରୋଷେଇ ଘର ଚାଳିଆ ଭିତରକୁ

ନୂଆବୋଉ, ନୂଆବୋଉ ଡାକି ପଶିଗଲା ବେଳକୁ ପଛରୁ ବଡ଼ ପାଟି କରି ବିପିନି ଡାକିଲା "ନରିଆ ଭାଇ ଧାଇଁଆ" । ବୁଲିପଡ଼ି ନରିଆ କହିଲା କ'ଣ କିରେ ? 'ତୁ ଆଗ ଶୀଘ୍ର ଆସିଲୁ' - ଏତିକି କହି ବିପିନି ଆଗେ ଆଗେ ଧାଇଲା । ଫୁଲଝରା ବଡ଼ ପୋଖରୀ ଆଡ଼େ ଦିହେଁ ଧାଇଁଥାନ୍ତି । ବର୍ଷାଦିନ ମାଟି କାଦୁଅରେ ଗୋଡ଼ ପଶି ଯାଉଥାଏ । ଆଖୁ କିଆରୀ କଡ଼େ କଡ଼େ ହିଡ଼େ ହିଡ଼େ ସେମାନେ ଧାଇଁଥାନ୍ତି ।

ବଡ଼ ପୋଖରୀ କୂଳେ ପହଞ୍ଚିଲା ବେଳକୁ ସେଠି କେହି ନାହାଁନ୍ତି । ଶାଗୁଣା ଗୁଡ଼ାକ ଆକାଶରେ ପଲ ପଲ ବୁଲୁଛନ୍ତି । ଗାଁ ଧୋବା ଟୋକା ନିକୁଞ୍ଜ, ଏ ଦୁହିଁଙ୍କୁ ଦେଖି କହିଲା - ଏଠି କିଛି ନାହିଁ ସାଆନ୍ତେ, ଦକ୍ଷିଣେଶ୍ୱରଙ୍କ ଠିକି ଚାଲ ।

ତିନିଜଣ ଧଇଁ ସଇଁ ହୋଇ ସେଠି ପହଞ୍ଚିଲା ବେଳକୁ ଯାହା ଦେଖିଲେ, କାହାରି ପାଟିରୁ କଥା ବାହାରିଲା ନାହିଁ । ମନ୍ଦିର ବେଢାରେ ପାଞ୍ଚହାତିଆ ମରଦ ନିତେଇ ଲମ୍ବହୋଇ ଶୋଇଛି । ରାତିରେ ବିଲକୁ ପାଣି ମଡ଼େଇବା ପାଇଁ ଯାଇଥିଲା । କାଳ ସାପଟା ସବୁ ଶେଷ କରିଦେଲା । ପାଟିରୁ ତା'ର ଫେଣ ବାହାର ପଡିଛି । ପାଣି ଢାଳି ଢାଳି ଠାକୁର ବେଢା ବୁଡି ଗଲାଣି । ଦକ୍ଷିଣେଶ୍ୱର ଏଡ଼େ ପ୍ରତ୍ୟକ୍ଷ ଠାକୁର, ଆଜି କିନ୍ତୁ କିଛି ଶୁଣୁ ନାହାଁନ୍ତି ।

ନିତେଇ ଆଖି ଫିଟାଉ ନାହିଁ । ଭଗବାନ ସତେ ଏତେ ନିଷ୍ଠୁର ! କୋକିଳ ମୁଣ୍ଡ ପିଟି ପିଟି କହୁଥାଏ ମୁଁ ନମଲି କାହିଁକି ? ଅଲେଖା ଭୂଇଁ ସାଉଁଟି ପଡିଥାଏ । ତା'ର ଚେତା ନାହିଁ । କୋକିଳ କାନ୍ଦି କାନ୍ଦି ମୁହଁ ଆଖି ସବୁ ଫୁଲି ଗଲାଣି ।

କିଏ କହୁଥାଏ ଗତମାସରେ ମୋର ବଳଦ ମରିଗଲେ ଯେ ନିତେଇ ନଥିଲେ ଜମି ପଡିଆ ପଡିଥାନ୍ତା । କିଏ କହୁଥାଏ ମୋ ଭଉଣୀ

ବାହାଘର ବେଳେ ନିତେଇ ଭାଇ ନଥିଲେ ବର ବେଦୀରୁ ବାହୁଡ଼ି ଯାଇଥାନ୍ତା । ସପନା କାନ୍ଦି କାନ୍ଦି କହୁଥାଏ ଆମ ଦି' ଭାଇଙ୍କ କଳି ଯଦି ସିଏ ମିମାଂସା କରିନଥାନ୍ତା, ଆମେ କୋର୍ଟ କଚେରୀ ଯାଇ ଭିକାରୀ ହୋଇ ଯାଇଥାନ୍ତୁ ।

ନରିଆ ବିପିନି କି କହିଲା - ଏଇଥିପାଇଁ କଥାରେ ଅଛି "ପ୍ରାଣୀର ଭଲମନ୍ଦ ବାଣି, ମରଣ କାଳେ ତାହା ଜାଣି ।" ଏତିକି କହୁ କହୁ ନରିଆ ଭୋ ଭୋ ହୋଇ କାନ୍ଦି କାନ୍ଦି ଶବ ଉପରେ ଲୋଟି ପଡ଼ିଲା ।

ଶବ ପୋଡ଼ା ସଇଲା । ଘରକୁ ମାଲଭାଇମାନେ ଫେରିଲା ବେଳକୁ ମୁହଁ ସଞ୍ଜ । ଗାଁ ସାରା ଚହଳ ପଡିଛି । ରମଣି ନାହିଁ, ଖୋଜାଖୋଜି ଚାଲିଲା । ଅଲେଖାର ପୁତୁରା ନବୀନ ଖୋଜି ଖୋଜି ବଡ଼ ପୋଖରୀ ଆଡ଼େ ଯାଇଥିଲା, ଦେଖିଲା ପୋଖରୀ କୂଳରେ ରମଣୀ ନାନୀ ବସି କାନ୍ଦୁଛି । ମୁଣ୍ଡ ପିଟି ପିଟି ଫଟେଇ ଦେଲାଣି । ନବୀନ ତାକୁ କୁଣ୍ଢେଇ ପକାଇ କହିଲା - ଏମିତି ହେଲେ କ'ଣ ହେବ କହିଲୁ ? ନିତେଇ ଭାଇନା କ'ଣ ଫେରି ଆସିବ ? ଚାଲ୍ ଘରକୁ ଚାଲ୍ ।

ଭିଡ଼ି ଓଟାରି ନବୀନ ତାକୁ ଘରକୁ ଆଣିଲା ଗାଁ ମାଇପେ ବୁଝେଇ ସୁଝେଇ ଫାଟିଫୁଟି ଗଲେ । ରମଣୀର ଛାତିଟା ଯେମିତି ଫାଟି ଖଣ୍ଡ ଖଣ୍ଡ ହୋଇଯାଉଛି । ଥରକୁ ଥର ସେ କାନ୍ଦି କାନ୍ଦି ବେହୋସ୍ ହୋଇ ଯାଉଛି । ତା'ର ଚେତା ବୁଡ଼ିଯିବାରୁ ମୁହଁରେ ପାଣି ଛଟା ହେଉଛି ।

ରମଣି ପାଇଁ ଭଲ ଚାଷୀ ଘରମାନଙ୍କରୁ ବରଘର ପ୍ରସ୍ତାବ ଆସିଲାଣି । କିଏ କେତେ ବୁଝେଇଲେଣି । କିନ୍ତୁ ରମଣୀ କାହାକଥା ଶୁଣିଲା ନାହିଁ । କହିଲା - ବାଲିଘର ତ ଯେମିତି ହେଲେ ଦିନେ ନା ଦିନେ ଭୁଷୁଡ଼ି ଯିବ; ସେ ଘର ଆଉ ତା'ର ଦରକାର ନାହିଁ । ସେ ଥରେ ବାହା ହୋଇଛି, ଆଉ କି ବାହା ?

ପନ୍ଦର ବର୍ଷ ହେଲା ଦାଦି ଖୁଡ଼ି ମଲେଣି । ନବୀନ ରମଣୀକୁ ନେଇ ଘରେ ରଖିଥିଲା । ନବୀନ ବାହା ହୋଇ ଯେତେବେଳେ ତିନୋଟି ପିଲା ହୋଇଗଲେ, ମୁଖରୀ ଭାଉଜ ରମଣୀକି ଗଣ୍ଡାଏ ଭଲକରି ଖାଇବାକୁ ବି ଦେଲାନାହିଁ । ଦିନେ ଗାଳିଗୁଲଜ କରି ଘରୁ ବାହାର କରିଦେଲା । ମାଇ ମୁହାଁ ନବୀନଟା କିଛି ବି କହିଲାନି । ରମଣୀ ଆ' ଘରେ ତା' ଘରେ କାମ ପାଇଟି କରି ଗଣ୍ଡାଏ ଖାଏ । ଲୋକେ କହନ୍ତି ''ବାହା ହୋଇଥିଲେ ଖୁସିରେ ଥାଆନ୍ତା, ଜିଦ୍ କଲା ଯେ କ'ଣ ପାଇଲା ।'' ରମଣୀ କାହାକଥା ଶୁଣେନି ।



# ଅମାବାସ୍ୟାର ଜହ୍ନ

ଅତନୁ ଘରେ ତାର ଶେଷ ନିଷ୍ପତ୍ତି ଶୁଣାଇ ଦେଇଛି । ସେ ମୋଟ ଉପରେ ବାହା ହେବନି । ଆଉ ଯଦି କେବେ ବାହା ହେବ, ତେବେ ମାନସୀ ମହାନ୍ତିଙ୍କ ଛଡ଼ା କାହାକୁ ନୁହେଁ ।

ଘରେ କିଏ କେତେ ବୁଝାଇଲେ ମଧ କିଛି ଲାଭ ନାହିଁ । ଅତନୁ ତା ନିଜ କଥାରେ ସବୁବେଳେ ଅଟଳ । ଯାହା କହେ ତା'କରେ । ଅତନୁର ମା ଶ୍ରାବଣୀ, ତାକୁ ଖୁବ ଗେହ୍ଲା କରିଦେଇଛନ୍ତି । ଏକମାତ୍ର ସନ୍ତାନ ପୁଣି ପିତୃହୀନ ପୁଅ ପ୍ରତି ଶ୍ରାବଣୀଙ୍କ ହୃଦୟ ଶିରୀଷ କୁସୁମ ପରି କୋମଳ । ଅତନୁ ଯାହା କରୁ ପଛେ, ତାକୁ ସେ କେବେ ହେଲେ କଡ଼ା କଥା ପଦେ କହନ୍ତି ନି ।

ସେଦିନ ଥିଲା ଏକ ଶ୍ରାବଣ ସଂଧ୍ୟା । ନିଝୁମ୍ ବର୍ଷା । ଅତନୁ ଘର ସାମ୍ନାରେ ଗୋଟାଏ କାର୍ ଆସି ଠିଆହେଲା । ପଢାଘର ଝରକା ଫାଙ୍କରୁ ଅତନୁ ଦେଖିଦେଲା ମଧୁମିତାକୁ । ସେ ଦୁହେଁ ଏକା କଲେଜ୍‌ରେ ପଢନ୍ତି । ଅତନୁ ମଧୁମିତା ଠାରୁ ଦି'ବର୍ଷ ସିନିୟର୍ ହେଲେ ମଧ ଦୁଇଜଣଙ୍କର ସମ୍ପର୍କ ଅତି ଘନିଷ୍ଠ । ସତେ କି କ୍ଲାସ୍ ମେଟ୍ !

ଅତନୁ ଆଉ ସମ୍ପର୍କଟା ଛିନ୍ନ ହେବାକୁ ଯାଉଥିବାବେଳେ ମଧ, ମଧୁମିତା ଖୁବ୍ ସତର୍କତାର ସହ ଯୋଡ଼ି ଚାଲେ - ସମ୍ପର୍କକୁ । ଅତନୁ ମନେ ମନେ ଭାବିଲା- ଏତେ ବର୍ଷାରେ ସେ କୁଆଡ଼େ ଆସିଛି ? ଡ୍ରଇଂ ରୁମ୍‌ରେ ଆସି ଅତନୁ ବସିଲା, ଯେଉଁଠି ମଧୁମିତା ତା'ମାଙ୍କ ସଙ୍ଗେ ମନ ଖୁସିରେ ବସି ଗପୁଥିଲା । ଅତନୁ ପଚାରିଲା "ତୁମେ ଏତେବେଳେ ଏମିତି ବର୍ଷାରେ - କୁଆଡ଼େ ? କାଲି ସକାଳେ ଆସିଥିଲେ କ'ଣ ହୋଇନଥାନ୍ତା" ?

ଅତନୁର ପାଟିରୁ କଥା ଛଡ଼ାଇ ନେଇ ମଧୁମିତା କହିଲା- "କାଲି ଆସିଥିଲେ ଆଉ କି ଲାଭ ହୋଇଥାନ୍ତା" ? ଅତନୁ କହିଲା "ମାନେ" ? ମଧୁମିତା ଅତନୁ ହାତକୁ ହସି ହସି ଗୋଟାଏ ଫର୍ମ ବଢାଇଦେଇ କହିଲା "କାଲି ଏ ଫର୍ମ ପକେଇବାର ଶେଷ ତାରିଖ ।

ସରକାରୀ କଲେଜ୍‌ର ଅଧ୍ୟାପକ । ଇଣ୍ଟରଭିଉ ପାଇଁ ରେଡ଼ି ହୋଇଯାଅ । ବେଶ୍ ଭଲ ଦରମା । ଏଇମ ଆମ ଷ୍ଟାଡିୟମ୍ କମ୍ପ୍ଲେକ୍ସ ପଛପଟେ, ବିଦ୍ୟାନନ୍ଦ କଲେଜ୍ ।''

ମଧୁମିତା ହାତରୁ ଫର୍ମଟି ନେଇ ଧନ୍ୟବାଦ ଜଣାଇଲା ଅତନୁ । ମନେ ମନେ ଖୁବ୍ ଖୁସି ହେଲା । ମନରେ ଥିବା ଆଶାର କଢ଼ୀସବୁ ଫୁଟି ଉଠିଲେ । ଅନ୍ତତଃ ଇଣ୍ଟରଭିଉ ଦେବାର ସୁଯୋଗ ମିଳିଗଲେ ସେ ନିଶ୍ଚୟ ଚାକିରୀ ପାଇବ - ଏଥିରେ ସନ୍ଦେହ ନାହିଁ ।

ଶ୍ରାବଣୀ ଭିତରୁ ଦୁଇ କପ୍ ଚା ଆଣି ଟେବୁଲ ଉପରେ ରଖିଲେ । ଚା ପିଇ ସାରି ମଧୁମିତା ଯିବାକୁ ବାହାରିଲା । ଶ୍ରାବଣୀ କହିଲେ - ''ଏକେଲାଟା ଯିବୁ କାହିଁକି ? ଅତନୁ ଯାଉ ଛାଡ଼ିଦେଇ ଆସିବ ।'' ଅତନୁ ଅସୁବିଧାରେ ପଡ଼ିଗଲା । ତଥାପି ମାଙ୍କ ଆଦେଶ ମାନି ମଧୁମିତାକୁ ଛାଡ଼ିଦେବା ପାଇଁ କାର୍‌ରେ ଗଲା । ସେ ଜାଣେ, ଅସୁବିଧା କିଛି ହେବନାହିଁ । ମଧୁମିତାର ଡ୍ରାଇଭର ତାକୁ ପୁଣି ଆଣି ଛାଡି ଦେଇଯିବ । ସକାଳୁ ବର୍ଷା ଲାଗିରହିଛି । ପୁଣି ଘଡ ଘଡି ସହ ବିଜୁଳି ମାରୁଛି ।

ଅତନୁ ଭାବି ଚାଲିଛି ଅନେକ କଥା । ଏ ଝିଅଟି ତାକୁ ଏତେ ଭଲପାଏ କାହିଁକି । ଏତେ ବଡ଼ ଘରର ଝିଅ । ତା'ର ବା ଅଭାବ କଣ ? ତା ଅତନୁ ଅପେକ୍ଷା ଖୁବ୍ ଭଲ ପ୍ରସ୍ତାବ ଆସିବ । କାରରୁ ଓହ୍ଲାଇ ମଧୁମିତା କହିଲା - ''ଆଜି କଣ ତୁମର ମଉନବ୍ରତ ଥିଲା କି ?'' ଆଶ୍ଚର୍ଯ୍ୟ ହୋଇ ଅତନୁ ତା' ମୁହଁକୁ ଅନାଇଲା । କଣ କହିବ ଭାବୁଥିଲା । ଏତିକିବେଳେ ମଧୁମିତା କହିଲା ''ଯାଅ ଯାଅ ମାଉସୀ ବ୍ୟସ୍ତ ହେଉଥିବେ'' । ଅତନୁ ମଧୁମିତାକୁ ଚାହିଁଲାବେଳକୁ ଦେଖିଲା ମଧୁମିତା ମୁରୁକି ମୁରୁକି ହସୁଛି ।

ମନ ଭିତରେ ଅନେକ ପ୍ରଶ୍ନର ବୋଝ ମୁଣ୍ଡେଇ ଅତନୁ ଘରକୁ ଫେରିଲା । ଶ୍ରାବଣୀ ଦାଣ୍ଡ ଦୁଆରେ ପୁଅର ଆସିବା ବାଟକୁ ଚାହିଁ ଠିଆ ହୋଇଥିଲେ । ତାଙ୍କୁ ଦେଖି ଅତନୁ ତଳକୁ ମୁହଁ କରି ଭିତରକୁ ପଶିଗଲା ।

ବେଳେବେଳେ ମା'ଙ୍କ ପାଦତଳେ ତା'ମଥା ଆପେ ଆପେ ନଇଁ ଆସେ । କେବେ କେବେ ଭାବେ ମନ ଖୋଲି ସବୁକଥା ମାଙ୍କୁ କହିଦେବ । କାହିଁକି ସେ ଭଲ ପାଏ ମାନସୀ କୁ । ମାଆ ତା' କବିତା ପଢିଲେ ଆନନ୍ଦରେ ଆତ୍ମ ବିଭୋର ହୋଇ ଯାଆନ୍ତେ । କିନ୍ତୁ ସେ ମନସୀର କବିତା କାହିଁକି ତାଙ୍କୁ ଦେଖାଇ ପାରେନା କେଜାଣି ?

ମାଙ୍କ ଚରିତ୍ର ଏକ ଭିନ୍ନ ସ୍ୱାଦର । ସେ କିଛି ନ କହି ସବୁବେଳେ ଚୁପ୍‌ଚାପ ରହନ୍ତି । ଅତନୁ ତାଙ୍କୁ ଦେଖିଲେ ବେଳେ ବେଳେ ଭୟ କରେ ପୁଣି କୌଣସି କଥା ମଧ କହିବା ପାଇଁ ସାହସ କରେନାହିଁ । ନିଜର ସବୁସୁଖକୁ ମା ଅନ୍ୟମାନଙ୍କ ପାଇଁ ଜଳାଞ୍ଜଳି ଦେଇଛନ୍ତି । ସବୁ ଦୁଃଖର ବିଷ ପିଇ ମଧ ସେ ବିଷାକ୍ତ ନୁହଁନ୍ତି । ତାଙ୍କ ଉଦାରତା ପାଖରେ ଅତନୁ ହାରମାନେ ।

ଶ୍ରାବଣୀଙ୍କ ପାଇଁ ସେଦିନ ଥିଲା ଗୋଟିଏ ଅଭୁଲା ପୌଷ ସଂଧ୍ୟା । ଅତନୁର ଆଲ୍‌ମିରା ସଜାଡୁ ସଜାଡୁ ସେ ପାଇଥିଲେ ଖଣ୍ଡେ ଚିଠି । ତଳେ କାହାରି ନାଁ ନ ଥିଲା । ଯେତେବେଳେ, ପୁଅ ନିଶ୍ଚୟ ତା' ଅକ୍ଷର ସହିତ ଖୁବ୍ ପରିଚିତ ବୋଲି ଭାବିବା ଯୁକ୍ତି ଯୁକ୍ତ ହେବ । ଆଗରୁ ଟିକିଏ ତାଙ୍କ କାନରେ ମାନସୀ କଥା ପଡ଼ିଥିଲା । ସେ ଚିଠିଟିକୁ ଅତନୁ ସାଇତି ରଖିଛି କାହିଁକି ? ଅତନୁଠାରୁ ଝିଅଟି ଖୁବ୍ ଉଚ୍ଚ ଓ ଧନୀ ପରିବାରର ଏକଥା ଚିଠିରୁ ବେଶ୍ ପ୍ରମାଣିତ ହେଉଛି । ତେବେ ଝିଅଟି କିଏ ? ଏଇ ଝିଅଟି ମାନସୀ ନୁହେଁତ ?

ଅନେକ ଗୁଡ଼ିଏ ପ୍ରଶ୍ନର ମୁଣ୍ଡ ଭାରାକ୍ରାନ୍ତ ଲାଗିଲା, ଶ୍ରାବଣୀ ବେଡ୍‌ରୁମ୍‌ର ଲାଇଟ୍ ଲିଭାଇ ଶୋଇବାକୁ ଚେଷ୍ଟାକଲେ । କିନ୍ତୁ କାହିଁକି କେଜାଣି ତାଙ୍କୁ ନିଦ ହେଲାନାହିଁ ।

ରାତି ପ୍ରାୟ ଏଗାରଟା । ଅତନୁ ରୁମ୍‌ର ବତୀ ଜଳୁଛି । ଅନେକ କଳ୍ପନା ଓ ଭାବନା ଭିତରେ ଅତନୁ ନିଜକୁ ହଜାଇ ଦେଇଛି । ଭାବୁଛି ମାନସୀକୁ ଚିଠି ଲେଖିବ । ମାନସୀର କବିତାକୁ ସେ ଖୁବ୍ ଭଲପାଏ ବୋଲି ଜଣାଇଦେବ । କିନ୍ତୁ କେମିତି ଜଣାଇବ ? ମାନସୀର ଠିକଣା ପାଇବ ବା କେଉଁଠୁ ? ଏତେ କବିତା ତାଙ୍କର ପ୍ରକାଶ ପାଏ କିନ୍ତୁ କାହିଁରେ ତ ଠିକଣା ନଥାଏ ?

ଅତନୁ ମନ ଭିତରେ ଚିନ୍ତାର ଅଡୁଆ ସୁତା ଖିଅ ଆହୁରି ଅଡୁଆ ତଡୁଆ ହୋଇଗଲା । ସବୁଦିନ ଏମିତି ମନଭିତରେ ମୋଟାଏ ବୁଢ଼ିଆଣୀ ଜାଲ ସୃଷ୍ଟି ହୁଏ, ସକାଳପାହେ- ଅତନୁ ରାତିସାରା ଅନିଦ୍ରା ରହେ ।

ସେଦିନ ରବିବାର । ବଗିଚାର କୃଷ୍ଣଚୂଡ଼ା ଫୁଲ ସବୁ ହସି ଉଠିଲେଣି । ସୂର୍ଯ୍ୟାଲୋକରେ ସ୍ନାନ କରିବା ପାଇଁ ଗୋଲାପ ରାଣୀମାନେ ଓଢ଼ଣାକାଢ଼ି ଚାହିଁଲେଣି ।

ଠିକ୍ ଏତିକି ବେଳକୁ ମଧୁମିତା ଆସି ପହଞ୍ଚିଲା । ଗଭାରେ ତା'ର ବଉଳ ଫୁଲର ବାସ୍ନା । ଓଠରୁ ସତେକି ଅମୃତ ଝରୁଛି । ସବୁ ଦିନର ସେଇ ହସ ହସ ମୁହଁ । ମନରେ ଯେମିତି ଅନେକ ଅକୁଆକାଂକ୍ଷା । ମନଖୋଲି କଥା ପଦେ କହିବାର ସୁଯୋଗ, ତାକୁ ଅତନୁ କେବେ ବି ଦେଇନି । ଅତନୁର କଳ୍ପନା-ପରିଧି ଭିତରକୁ ମଧୁମିତା ଏଯାଏ ଆସିନି । ମଧୁମିତା ହୁଏତ ଏକଥା ଜାଣିନି ।

ମଧୁମିତା ଅତନୁକୁ ଭଲପାଏ । ଆଉ ଅତନୁ ତାକୁ ଭଲ ନପାଇବାର ପ୍ରଶ୍ନ କାହିଁକି ବା ଉଠିବ ? ମନେ ମନେ ସ୍ୱପ୍ନ ଦେଖେ ମଧୁମିତା । ସ୍ୱପ୍ନର ତାଜ୍ ଗଢ଼ିଦିଏ ହୃଦୟର ନିଭୃତ କୋଣରେ । କେବେ କେବେ ଜୀବନର ସବୁ କିଛି ବୋଲି ଧରିନିଏ ଅତନୁକୁ । ଅତନୁର ଶାନ୍ତଶିଷ୍ଟ ସୁନ୍ଦର ଚେହେରା ତାକୁ ଖୁବ୍ ଭଲଲାଗେ । କିନ୍ତୁ ସେ କିଛି କହିପାରେ ନା ଅତନୁକୁ ।

ଅତନୁର ମନମନ୍ଦିର ଭିତରେ ଏକମାତ୍ର ଆରାଧଦେବୀ ମାନସୀ । ରାତି ସବୁଦିନ ପରି ଆସେ । ରାତିର ନିଭୃତ ପ୍ରହରରେ ଅତନୁ ମାନସୀକୁ ସ୍ୱପ୍ନ ଦେଖେ । ଦୁହେଁ ହଜି ଯାଆନ୍ତି ରାଜନଅରର କେଉଁ ଏକ ରାଣୀ ହଂସପୁର ଭିତରେ । ନିଦ ଭାଙ୍ଗେ, ଅତନୁ ଭାବେ ସେ ଯଦି ମାନସୀକୁ ନପାଇବ ତେବେ ତା' ଜୀବନ ନିଶ୍ଚିତ ଭାବେ ବ୍ୟର୍ଥ ହୋଇଯିବ ଜୀବନର କିଛିମାନେ ରହିବନି । ସାରା ଜୀବନଟା ଅନାବଶ୍ୟକ ମନେ ହେବ । ଏମିତି ଭାବୁ ଭାବୁ କେତେବେଳେ ଦିନସରି ଯାଏ ଅତନୁ ଜାଣିପାରେନା । ରାତି ପୁଣି ସ୍ୱପ୍ନ ସାଗରକୁ ନେଇ ଫେରିଆସେ ଧରାତଳକୁ ।

ସେଦିନ । ସିନ୍ଦୁରାଫାଟି ସକାଳ ହେଲା । ସୂର୍ଯ୍ୟ ଚାରିଆଡ଼େ ବିଛେଇ ଦେଲେଣି ନାଲି ମୁରୁଜରୁ ମୁଠାଏ । ସାରା ପୃଥିବୀ ରଙ୍ଗୀନ ହୋଇଉଠିଲାଣି । ସେଇ ରଙ୍ଗରେ ଅତନୁ ତା ମନକୁ ରଙ୍ଗେଇ ଦେଲାଣି ।

ମୁହଁ ଧୋଇ 'ଚା' ପିଉ ପିଉ ଅତନୁର ଖବର କାଗଜ ଉପରେ ହଠାତ୍ ଦୃଷ୍ଟି ପଡ଼ିଗଲା । ପ୍ରଖ୍ୟାତ ନାରୀ କବି ମାନସୀ ମହାନ୍ତି ସେଇ ସହରରେ ଟାଉନ୍ ହଲ ସଭାଗୃହରେ ଭାଷଣ ଦେବେ । ତାଙ୍କର ଉଦ୍‌ବୋଧନ ମୂଳକ କବିତା ଗୁଡ଼ିକ ପାଠ କରାଯିବ । ଅତନୁ ଆନନ୍ଦରେ ଆତ୍ମବିଭୋର ହୋଇପଡ଼ିଲା । ଏତେ ଦିନରେ ତା' ହୃଦୟର ଦେବୀ, ତା ମନର ମାନସୀକୁ ସେ ପାଖରେ ପାଇବ । ଆଖିରେ ତା'ର ଆଜି କାଉଁରୀ କାଠିର ସ୍ପର୍ଶ ।

ଅତନୁର ମନେ ପଡ଼ିଗଲା ବହୁଦିନ ତଳେ ପଢ଼ିଥିବା ତାଙ୍କ କବିତାଟି । ଶୀର୍ଷକ ଥିଲା "ପ୍ରିୟତମ ମୋର" । ଇସ୍ କି କବିତା ! ଥରେ ପଢ଼ିଲେ ଜୀବନ ସାରା ଭୁଲିହେବନି । ଅତନୁଭାବେ, ସତେ ଯେମିତି ତା'ରି କଥା ହିଁ କବିତାର ବିଷୟବସ୍ତୁ ଥିଲା । ବନ୍ଧୁ ରାକେଶ୍ ସବୁ ଜାଣେ । ଅତନୁ ନିଜକୁ ଆଉ ସମ୍ଭାଳି ପାରିଲାନି । ଖବର କାଗଜଟି ଧରି ଧାଇଁଲା । ପଡ଼ିଶା ଘରେ ରହୁଥିବା, ତା'ର ସେଇ ଅନ୍ତରଙ୍ଗ ବନ୍ଧୁ ରାକେସ୍ ପାଖକୁ । ଖବରକାଗଜ ଦେଖି ରାକେସ୍ କହିଲା, "ତେବେ ତୋର ପ୍ରେୟସୀ ଆଜି ଏଇ ସହରରେ ଆବିର୍ଭାବ ହେଉଛନ୍ତି ।" ଅତନୁ ଲାଜେଇ ଗଲା ।

ରାକେସ୍ ଓ ଅତନୁ ଠିକ୍ ସମୟରେ ଯାଇ ଟାଉନ୍ ହଲରେ ସିଟ୍ ଯୋଡ଼ିଏ ମାଡ଼ିବସିଲେ । ଅତନୁ ଅଧୈର୍ଯ୍ୟ ହୋଇପଡ଼ି ରାକେସ୍‌କୁ ପଚାରିଲା- "ଆଚ୍ଛା କହିଲୁ, ତାଙ୍କୁ ପ୍ରଥମେ କେମିତି କହିବା, ମାନେ କ'ଣ କହି ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିବା" ।

ରାକେସ୍ କହିଲା, ଏବେଠାରୁ ଏମିତି ଛାନିଆ ହେଉଛୁ କାହିଁକି ? ଯାହା କିଛି କହିବୁ, ସେ ଭାଷଣ ଦେଇ ସାରିବା ପରେ ଏବଂ କବିତା ପାଠୋତ୍ସବ ପରେ କହିବୁ । ମୋଟେ ନରଭସ୍ ହେବୁନି" ।

ରାକେସ୍ ପରାମର୍ଶ ଅନୁସାରେ ଝିଅଟିକୁ କ'ଣ କ'ଣ ପଚରା ହେବ, ତା'ର ଗୋଟିଏ ତାଲିକା ପ୍ରସ୍ତୁତ କରାଗଲା । ସନ୍ଧ୍ୟା ନଇଁ ଆସିଲା । ନୀଳ ଆକାଶରେ ପକ୍ଷୀ ସବୁ କିଚିରି ମିଚିରି ଶବ୍ଦ କରି ବସାକୁ ଫେରିଲେ ।

ଅତନୁ ମନଟା ଛଟପଟ ହେଉଛି । ବିଳମ୍ବତା ଆଉ ସହ୍ୟ କରି ହେଉନାହିଁ । ମାନସୀକୁ ଦେଖିବା ପାଇଁ ମନ ବ୍ୟାକୁଳ ହୋଇ ଉଠୁଛି । ସଭାରେ ବହୁଲୋକ ଉପସ୍ଥିତ । ସଭା ସରଗରମ୍ ହୋଇଆସିଲାଣି ।

ଠିକ୍ ସନ୍ଧ୍ୟା ସାତଟା । ଅତନୁ ଏଣିକି ତେଣିକି ଚାହୁଁଥାଏ । ପାଖ ସିଟ୍‌ରେ ବସିଥିବା ବୃଦ୍ଧ, କାହାକୁ କହୁଥିଲେ- "ସେ ଜଣେ ବିଖ୍ୟାତ ନାରୀ କବି । ଖାଲି କବି ନୁହନ୍ତି, ଔପନ୍ୟାସିକା ଓ ଗାଳ୍ପିକା ମଧ୍ୟ ।" ଏହି କଥାଟି ଅତନୁର କାନରେ ପଡ଼ିବା କ୍ଷଣି ସେ ବୃଦ୍ଧ ଜଣଙ୍କୁ ପଚାରିଲା- "ଆପଣ କ'ଣ ତାଙ୍କୁ ଜାଣନ୍ତି ?" ବୃଦ୍ଧ ଉତ୍ତର ଦେଲେ- "ତାଙ୍କୁ କିଏ ନଜାଣେ ?" ସଂଗେ ସଂଗେ ଅତନୁ ଆଉ ଗୋଟିଏ ପ୍ରଶ୍ନ କଲା- "ତାଙ୍କୁ ଆପଣ ଦେଖିଛନ୍ତି ?" ବୃଦ୍ଧ କହିଲେ- "ତାଙ୍କୁ କିଏ ନ ଦେଖିଛି ?"

ଅତନୁ ନିଜକୁ ନିଜେ ଅପମାନିତ ବୋଧ କଲା । ସତରେ ସେ ଦୁର୍ଭାଗାଟା !! ଏ ପର୍ଯ୍ୟନ୍ତ ସେ ହିଁ ମାନସୀଙ୍କୁ ଦେଖିନାହିଁ ।

କିଛି ସମୟ ପରେ ସଭାଗୃହରେ ଫାଟକ ପାଖରେ ଗୋଟାଏ ମାରୁତି ଏଇଟ୍ ହଣ୍ଡ୍ରେଡ୍ କାର୍ ଆସି ଠିଆ ହେଲା । ସଂଗେ ସଂଗେ ଦଳେ ଫଟୋଉଠାଳି ଧାଇଁଲେ କାର୍‌ପାଖକୁ । ଦୁଇ ଚାରିଜଣ ସାମ୍ବାଦିକ ଦୌଡ଼ିଲେ ଫାଟକ ଆଡ଼କୁ । କାହାର କାହା ପ୍ରତି ଦୃଷ୍ଟି ନାହିଁ ।

ଅତନୁ ସିଟ୍‌ରେ ବସିବ, ନା ଉଠି ଠିଆହେବ, କି କାର୍ ପାଖକୁ ଧାଇଁ ଧାଇଁ ତା'ର ଅଭିଳାଷିତା ମାନସୀ ମହାନ୍ତିକୁ ଥରେ ଦେଖି ଆସିବ- କିଛି ହେଲେ ସ୍ଥିର କରି ପାରିଲାନି । ସେ ବାରମ୍ବାର ସିଟ୍‌କୁ ଉଠିଠିଆ ହେବାର ଦେଖି ରାକେସ୍ ତା ହାତଧରି ଜୋର୍‌ରେ ଟାଣି ବସାଇଦେଲା । କହିଲା- ''ଚୁପ୍‌ଚାପ୍ ଏଇଠି ବସି ଧୈର୍ଯ୍ୟଧରି ଅପେକ୍ଷା କର୍ । ସେ ଝିଅଟା ପେଣ୍ଡାଲ୍ ଉପରକୁ ନ ଆସି କ'ଣ କୁଆଡ଼େ ପଳେଇବ ?'' ଅତନୁ ଚୁପ୍ ହୋଇ ବସିଲା ।

ବହୁଜନ ଗହଳି ଭିତରେ ମାନସୀ ମହାନ୍ତି କାର୍‌ରୁ ଓହ୍ଲାଇଲେ । ଏତେ ଭିଡ଼ ହୋଇଥିଲା ଯେ, ହଲ୍‌ରେ ବସିଥିବା ଲୋକତ ଦୂରର କଥା, ତାଙ୍କୁ ଫାଟକ ପାଖରେ ଭେଟିବାକୁ ଯାଇଥିବା ଲୋକମାନେ ମଧ୍ୟ ଭିଡ଼ଭିତରେ ଦେଖି ପାରିନଥିଲେ ।

କାର୍ ପାଖରୁ ଦୁଇଜଣ ଭଦ୍ରବ୍ୟକ୍ତି ତାଙ୍କୁ ପେଣ୍ଡାଲ ଉପରକୁ ନିମନ୍ତ୍ରଣ କରି ଆଣିଲେ । ତାଙ୍କ ହାତରେ ଫୁଲ ତୋଡ଼ା ଦେବା ସମୟରେ କରତାଳିରେ ସଭାଗୃହ କମ୍ପି ଉଠିଲା । ସତୁରୀ ବର୍ଷର ବୃଦ୍ଧା ମାନସୀ ମହାନ୍ତି ହସି ହସି ଲୋକମାନଙ୍କୁ ହାତଯୋଡ଼ି ନମସ୍କାର ଜଣାଇଲେ ।

ଏକ ଲୟରେ ଅତନୁ ଓ ରାକେସ୍ ଚାହିଁରହିଥିଲେ ପେଣ୍ଡାଲ୍ ଉପରକୁ । ନାରୀ କବି ମାନସୀ ମହାନ୍ତିଙ୍କ ଭାଷଣ ପରେ ପରେ କବିତା ପାଠୋତ୍ସବ ଆରମ୍ଭ ହେଲା । ରାକେସ୍ ଓ ଅତନୁ ଧୀରେ ଧୀରେ ସଭାଗୃହର ବାହାରକୁ ଆସିଲେ ।

ବାହାରେ ନିଧୁମ୍ ବର୍ଷା । ଘରକୁ ସେମାନେ ଫେରିବେ କିପରି ? ଦୁହେଁ ଚିନ୍ତାରେ ପଡ଼ିଲେ । ଖୁଣ୍ଟିକୁ ଆଉଜି ଅତନୁ କେଜାଣି କ'ଣ ସବୁ ଭାବୁଥିଲା । ପଛରୁ ମଧୁମିତା ଡାକିଲା- ରାକେସ୍ ଭାଇ ! ଦୁହେଁ ଆସ ମୋ କାର୍‌ରେ ଛାଡ଼ିଦେବି । ଏବର୍ଷା ଏଇନେ ଛାଡ଼ିଲା ପରି ଲାଗୁନି । ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲେ । ନିରବରେ ଯାଇ ମଧୁମିତା ଗାଡ଼ିରେ ବସିଲେ ।

ମଧୁମିତା ଅତନୁକୁ ପଚାରିଲା । ''ତାଙ୍କ ଭାଷଣ କେମିତି ଲାଗିଲା ?'' ଅତନୁ କହିଲା ''ଭଲ ଲାଗିଲା'' । ରାକେସ୍ ଅତନୁ ମୁହଁକୁ ଚାହିଁ ରହିଥିଲା, ନିର୍ବାକ ଚଳଚିତ୍ରଟିଏ ପରି ।

●

# ନିରବ-ଅନେକ ପ୍ରସଙ୍ଗ ପରେ

ସୋମନାଥ ବାବୁଙ୍କ ସହିତ ମୋର ସଂପର୍କ ଖୁବ୍ ଭଲ । ଖାଲି ସଂପର୍କ କାହିଁକି ? ଏମିତିରେ ସେ ମୋର ସଂପର୍କୀୟ ବଂଧୁ ମଧ୍ୟ । ଅନେକ ସମୟରେ ସେ ଆମ ଘର ଆଡେ ଆସନ୍ତି । ଅନେକ ଆଲୋଚନା ହୁଏ । ଏଣୁ ତେଣୁ କଥା ମଧ୍ୟ ପଡେ । ଅନେକ ଥର ତାଙ୍କୁ ବିବାହ ବିଷୟରେ ପଚାରେ । ସେ ଆଜିପର୍ଯ୍ୟନ୍ତ କାହିଁକି ବିବାହ କରୁନାହାନ୍ତି- ଏମିତି କା ପ୍ରଶ୍ନ କଲେ, ସେ କେବଳ ଓଠ ଉପରେ ସ୍ମିତ ହାସ୍ୟର ରେଖାଟିଏ ଆଙ୍କିଦିଅନ୍ତି । ତା'ପରେ କଥାର ଦିଗ ବଦଳେଇ ଅନ୍ୟ କଥା ଆରମ୍ଭ କରନ୍ତି । ମୁଁ ବାଧ୍ୟରେ ନୀରବ ରହେ ।

ଥରେ ନୁହେଁ ଅନେକ ଥର ତାଙ୍କୁ ମାର୍କେଟ୍‌ରେ ଭେଟେ । ସେ ପରିବା କିଣିବାବେଳେ ଦେଖାହେଲେ ମୁଁ କହେ ଜଣକ ପାଇଁ ପରିବାପତ୍ର ନକିଣି ଆମଘରେ କ'ଣ ଖାଇଦେଲେ ଚଳନ୍ତାନି ? ସେଇ ଏକା ହସ ପୁଣି ଥରେ ଓଠ ଉପରେ ସାଗର ଲହରୀ ପରି ଭାସିଉଠେ । ସେ କହନ୍ତି ମୁଁ କାହାକୁ ଅସୁବିଧାରେ ପକାଇବାକୁ ଚାହେଁ ନାହିଁ । ଆଜି କାଲି ଯେଉଁ ପେଇଙ୍ଗ୍ ଗେଷ୍ଟ ଧନ୍ଦା ଚାଲିଛି ନା, ମୁଁ ତାର ସପକ୍ଷରେ ଆଦୌ ନୁହେଁ । ଏଇ ଛୋଟ ସହରଟିରେ ପ୍ରାୟ ପ୍ରତିଘରେ ପେଇଙ୍ଗ୍ ଗେଷ୍ଟମାନଙ୍କର ଅବାଧ ପ୍ରବେଶ । ମନରେ ଟିକିଏ ସଂକୋଚ ନାହିଁ । ସେମାନେ କ'ଣ ଭାବନ୍ତି କେଜାଣି ? ସାମାନ୍ୟ ପଇସା କେତେଟା ପକେଇଦେଲେ ଯେ ସବୁ କର୍ତ୍ତବ୍ୟ ଶେଷହୋଇ ଗଲା, ଏଇୟା ବୋଧେ ସେମାନଙ୍କ ଧାରଣା'' । ତାଙ୍କ କଥା ଶୁଣି ଅଭିମାନରେ ମୁଁ କହେ, ''ତେବେ ମୁଁ କ'ଣ ତୁମର ପର ? ମୋର କଥାରେ ବାଧା ଦେଇ ସେ ହସି ହସି କହନ୍ତି- ''ମୁଁ ସବୁବେଳେ ସତକଥା କୁହେବୋଲି ସମସ୍ତେ ମତେ ଭୁଲ ବୁଝନ୍ତି ତୁମେ ବା ସେଥିରୁ ବାଦ୍ ଯାଆନ୍ତ କିପରି'' ?

ଏକ ପ୍ରକାର ଜିଦ୍‌ଖୋର ଲୋକ, ତେଣୁ ଘରେ ଖାଇବା ପାଇଁ ମୁଁ ତାଙ୍କୁ ବାଧ୍ୟ କରେନା । ମୋର ତାଙ୍କୁ ଡାକିବା ପାଇଁ ସାହସ ବି ହୁଏନା । କାରଣ ତାଙ୍କ କଥାବାର୍ତ୍ତାରୁ ସ୍ପଷ୍ଟ ଜାଣିଛି, ସେ କେଉଁଠି ଖିଆପିଆ କରିବାକୁ ଭଲ ପାଆନ୍ତିନି । ହାତରେ ରାନ୍ଧି ଖାଇବାରେ ସେ ଭାରି ଖୁସି । ଏହା ତାଙ୍କର ଏକ ସହଜାତ ପ୍ରକୃତି ପରି ମନେ ହୁଏ ।

ଦୀର୍ଘ ଦିନର ପରିଚୟ, ଦୀର୍ଘ ଦୀନର ସଂପର୍କ- ତଥାପି ତାଙ୍କୁ ଆଜି ପର୍ଯ୍ୟନ୍ତ ମୁଁ ଠିକ୍ ଭାବରେ ବୁଝି ପାରିନି । ବେଳେବେଳେ ତାଙ୍କ କାର୍ଯ୍ୟକଳାପ ଉପରେ ସନ୍ଦେହ ହୁଏ ମୋର ।

ରଜ ସଂକ୍ରାନ୍ତି ଦିନ ଘରକୁ ଆସିଥିଲେ । ଭାରି ଶୁଖିଲା ଓ କ୍ଲାନ୍ତ ଦେଖାଯାଉଥିଲେ । କହିଲି "ବିବାହ କରୁନ କାହିଁକି ?" ତୁମର ବିବାହ କରିବା ଏକାନ୍ତ ଆବଶ୍ୟକ । ବୟସ ସବୁଦିନେ ଏମିତି ନଥିବ, ସମୟ ଆସିବ ଯେତେବେଳେ ଅନ୍ୟର ସାହାଯ୍ୟ ସହଯୋଗ ବିନା ମଣିଷ ବଞ୍ଚି ପାରିବନି ।" ସବୁ ଶୁଣି ସେ କେବଳ ହସି ଦେଲେ । ଲାଗୁଥିଲା ସତେ ଯେମିତି ସେ କିଛି କହିବାକୁ ଚାହୁଁଛନ୍ତି, କିନ୍ତୁ କହି ପାରୁନାହାନ୍ତି । ମୁଁ ବୁଝି ପାରେନି, ଏପରି ଅବିବାହିତ ରହିବାର କାରଣ କ'ଣ ? ଏଇଟା ଗୋଟାଏ ସୌଖିନ ନୁହେଁ ତ ?

ତାଙ୍କ ବାପା ମା'ଙ୍କ ସଂଗେ ଥରେ ଦେଖା ହୋଇଥିଲା । ସେମାନେ ସୋମନାଥଙ୍କ ପାଇଁ ଚିନ୍ତିତ ବୋଲି ଜାଣିଲି । ମନେ ମନେ ସ୍ଥିର କଲି, ଗୋଟାଏ କିଛି ଉପାୟ ଚିନ୍ତା କରି ତାଙ୍କ ମନକୁ ବଦଳାଇ ଦେବାକୁ ପଡ଼ିବ । ସେଇ ଚେଷ୍ଟାରେ ମୁଁ ରହିଲି । କିନ୍ତୁ ହଠାତ୍ ଦିନେ ମୋ ଆଖିରେ ଯାହା ଦେଖିଲି ଅବିଶ୍ୱାସ କିପରି ବା କରିବି ? ଏହି ଘଟଣା ମାସକ ପୂର୍ବରୁ ତାଙ୍କ ସହିତ ମୋର ଆଉ ସାକ୍ଷାତ ହୋଇନଥିଲା । ସେଦିନ ସଂଧ୍ୟା । ଭେଳା ଭେଳା ବାଦଲ ସବୁ ଭିଣାତୁଳା ପରି ଆକାଶରେ ଭାସି ବୁଲୁଥିଲେ । କୁହୁଡ଼ି ଘେରା ସେଦିନର ସେଇ ସଂଧ୍ୟା ଥିଲା ସ୍ୱତନ୍ତ୍ର ପରିବେଶର ସଂଧ୍ୟା । ମୁଁ ଝରକା ଖୋଲି ବାହାରିକୁ ଚାହିଁ ରହିଥିଲି । ଆଞ୍ଜୁଳାଏ ଲେଖାଏଁ କୋହଲା ପବନ ଝର୍କା ଭିତରକୁ ବେଳେବେଳେ ପଶି ଆସି ମୋ ଆଖିକୁ ମୁଦି ଦେଉଥିଲା । ରାସ୍ତାର ଆଲୁଅ ସବୁ ସେ ପର୍ଯ୍ୟନ୍ତ ଜଳି ନଥିଲା । ପ୍ରତିଦିନ ପରି ମୋ ଘର ସାମ୍ନାରେ ସମ୍ବଲପୁରର ରାତି ରହଣି ବସ୍‌ଟା ଆସିଠିଆ ହେଲା । ଏବେ ବୁଝି ପାରିଲି- ବସ୍‌ଷ୍ଟାଣ୍ଡରେ ପଛକୁ ମୁହଁକରି, କଳା କୋଟ୍‌ଟିଏ ପିନ୍ଧି, ଯେଉଁ ଭଦ୍ରବ୍ୟକ୍ତି ଅନେକ ସମୟ ହେଲା ସିଗାରେଟ୍ ଧୂଆଁ ଛାଡୁଥିଲେ, ସେ ଆଉ କେହି ନୁହେଁ, ସୋମନାଥ ବାବୁ । ମୋର ଉଦ୍‌ବେଗ ବଢ଼ିଗଲା । ହଠାତ୍ ବତୀ ଖୁଣ୍ଟ ଗୁଡ଼ିକରେ ଆଲୁଅ ଜଳିଉଠିଲା । ମୁଁ ସ୍ପଷ୍ଟ ଦେଖିପାରିଲି । ବସ୍‌ରୁ ଜଣେ ଭଦ୍ର ମହିଳା ଓହ୍ଲାଇଲେ । କି ସୁନ୍ଦର ସେ ଚେହେରା ! ମୋ ଆଖି ଝଲସିଗଲା ।

ମାର୍ଗଶୀର ମାସର କାଳୁଆ ଶୀତ । ଲୋକ ଗହଳି ନଥିଲା, ତେଣୁ ଖୁବ୍ ଭଲ ଭାବରେ ସେହି ସ୍ତ୍ରୀ ଲୋକଟିକୁ ମୁଁ ଦେଖି ପାରୁଥିଲି । ମହିଳା ଥିଲେ ଅତି ସୁନ୍ଦରୀ । ହାତରେ ଯଦିଓ ମୁଠା ମୁଠା ଚୁଡ଼ି ନଥିଲା, ତଥାପି ଅଳ୍ପ କେତେପଟ ଚୁଡ଼ି ହାତର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଥିଲା । ଲାଲ୍ ରଙ୍ଗର ପିଓର୍‌ସିଲ୍କ ସାଟିକୁ ମ୍ୟାଚିଂ ବ୍ଲାଉଜ୍ । ଫେସନ ବନ୍ୟାର କରାଳ ଲହରୀ ତାଙ୍କୁ ଯେ ସମ୍ପୂର୍ଣ୍ଣ ଗ୍ରାସ କରିଛି- ଏକଥା ଯଦିଓ କହିବା ଠିକ୍ ହେବନାହିଁ, ତଥାପି ସେଇ ଲହରୀର ଉତ୍ତାଳ ତରଙ୍ଗର ଦ୍ୱାର ଦେଶରେ ସେ ପ୍ରାୟ ଉପନୀତ, ଏହା ନିଶ୍ଚିତ ଭାବେ କହିହେବ ।

ଆଶା ଆଉ ଉପଭୋଗର ଗୋଟାଏ ଉଜ୍ଜଳରେଖା ତାଙ୍କ ମୁଖ ମଣ୍ଡଳକୁ ଆଚ୍ଛାଦିତ କରିଥିଲା । ପଳାସ ଫୁଲର ରଙ୍ଗ ନେଇ, ଓଠରେ ଲାଖିଛି ତୃପ୍ତିର ହସ ଖଣ୍ଡେ ।

ମୁଁ ଏକ ଲୟରେ ଚାହିଁ ରହିଥିଲି । ଆଗନ୍ତୁକଙ୍କ ହାତରୁ ଆଟାଚି୍‌ଟି ଧରି ସୋମନାଥବାବୁ ଆଗେ ଆଗେ ଚାଲିଲେ । ତାଙ୍କୁ ଅନୁଶରଣ କଲେ ମହିଳା ଜଣକ ।

ଏହାପରେ ଅନେକ ଦିନ ପର୍ଯ୍ୟନ୍ତ ସୋମନାଥ ବାବୁ ମୋ ଘରକୁ ଆସିନାହାନ୍ତି । କିନ୍ତୁ ବିଶେଷ ସୂତ୍ରରୁ ମୁଁ ଜାଣିପାରିଲି ଯେ ମହିଳା ଜଣକ ସୋମନାଥ ବାବୁଙ୍କ ଘରେ ଅନେକ ଦିନ ରହିଥିଲେ ।

ଦିନେ ସୋମନାଥ ବାବୁଙ୍କୁ ମାର୍କେଟରେ ଦେଖିଲି । ମୋ ମନ ଭିତରେ ଅହରହ ଜମାଟ ବାନ୍ଧିଥିବା ପ୍ରଶ୍ନଟି ହଠାତ୍ ମୁହଁରୁ ବାହାରି ପଡ଼ିଲା- ତମ ଘରକୁ ଜଣେ ମହିଳା ଆସିଥିଲେ ବୋଲି ଶୁଣିଲି, ସେ କିଏ ସେ ? ମୋ ପ୍ରଶ୍ନରେ ତାଙ୍କ ମୁହଁର ରଙ୍ଗ ବଦଳି ଗଲା । କିଛି ସମୟ ପାଇଁ ମତେ ଆଶ୍ଚର୍ଯ୍ୟ ଆଖିରେ ଚାହିଁଲେ । କହିଲେ- ସେ ମୋର ସମ୍ପର୍କୀୟା ଭଉଣୀ । ବୁଲି ଆସିଥିଲେ କିଛିଦିନ ପାଇଁ । ତା'ପରେ ସବୁଥର ପରି କଥାବଦଳାଇ ଅନ୍ୟ କଥା ଆରମ୍ଭ କଲେ ।

ମୁଁ ଅନୁମାନ କଲି ସେ ମୋତେ କିଛି ଲୁଚାଇବାକୁ ଚେଷ୍ଟା କରୁଛନ୍ତି । ଆଉ କିଛି ପଚାରିଲିନାହିଁ । ଗୁଡାଏ ପ୍ରଶ୍ନ ମୁଣ୍ଡେଇ ଘରକୁ ଫେରିଲି । ମୋ ମନରେ ଆହୁରି କୌତୁହଳ ବଢ଼ିଗଲା । ସେ କିଏ ? କାହିଁକି ଆସିଥିଲେ ? କିଛି ନଜାଣିପାରି କେମିତି ଅଶାନ୍ତିଆ ଲାଗିଲା । ନିରୁପାୟ ହୋଇ ବାଧ୍ୟରେ ଜାଣିବାର ପ୍ରବଳ ଇଚ୍ଛାକୁ ମନ ଭିତରେ ଚାପିରଖିଲି ।

ସେଦିନ ମୋ କଲେଜ୍ ବେଳର ବଂଧୁ ଅମୀତା ଆସି ହଠାତ୍ ପହଞ୍ଚିଲା । ଅନେକ ବର୍ଷ ପରେ ତା' ସହିତ ଦେଖା । ପଚାରିଲି ଏମିତି ଅଚାନକ କୁଆଡେ ଚାଲିଆସିଲୁ ? ସେ କହିଲା- ଆସିବାର ତ ନ ଥିଲା । କିନ୍ତୁ ହଠାତ୍ ମୋର ଏଠିକୁ ବଦଳି ହୋଇଗଲା । ସାତଦିନ ଭିତରେ ଆସି ପହଞ୍ଚିବାକୁ ପଡ଼ିଲା ।'' ମୁଁ ଭାରି ଖୁସି ହେଲି । ଯା' ହେଉ ଜଣେ ଡାକ୍ତର ବଂଧୁ ତ ପାଖରେ ରହିଲା ।

ସେ ମୋ ଘରେ ଅତିଥି ହେଲା ମୋଟେ ଦୁଇଟିଦିନ ପାଇଁ । ଖିଆପିଆ ସରିଲେ ରାତିରେ ଅନେକ ଗପସପ । ପିଲାଦିନରୁ ଏପର୍ଯ୍ୟନ୍ତ ସେ ଗପ ସରେ ନାହିଁ । ଦିନେ ଗପ ସପ ଭିତରେ ସମ୍ବଲପୁରର ଜଣେ ନର୍ସଙ୍କ ପ୍ରସଙ୍ଗ ଉଠିଲା । ଯୌତୁକ ବିରୋଧୀ ଅମିତା ଅନେକ କଥା ଗପିଚାଲିଥାଏ । ଏହି ସମୟରେ ହଠାତ୍ ସୋମନାଥ ବାବୁ ଘର ଭିତରକୁ ପଶି ଆସିଲେ । ଅମିତାକୁ ଦେଖି କାହିଁକି କେଜାଣି ତାଙ୍କ ମୁହଁଟା କଳାପଡ଼ି ଗଲା । ଅମିତା ତାଙ୍କୁ ପଚାରିଲା ଆଉ ସବୁ ଆପଣଙ୍କର ଭଲ ତ ? ସୋମାନଥବାବୁ 'ହଁ' କହି କୌଣସି କାମବାହାନାରେ ଆମଠାରୁ ବିଦାୟ ନେଇ ଚାଲିଗଲେ । ଏପରିକି ଚା'କପେ ମଧ ପିଇବାକୁ ମନାକଲେ ।

ସେ ଯିବାପରେ ଅମିତା ପଚାରିଲା, ଏ ଭଦ୍ର ବ୍ୟକ୍ତି ତୋ ଘରେ କିପରି ? କହିଲି ''ସେ ମୋର ବଂଧୁ ହୁଅନ୍ତି'' ସେ ହସିଲା । ଅମିତା ପ୍ରାୟ ପ୍ରତିକଥାରେ ହସେ । ତେଣୁ ତା' ହସ ଉପରେ ଗୁରୁତ୍ୱ ନଦେଇ କହିଲି-''ବିଚରା ଲୋକଟା ବାହାସାହା ନହୋଇ ବଡ଼ ହଇରାଣରେ ଅଛି ।'' ଏଥର ଅମିତା ପୂର୍ବ ଅପେକ୍ଷା ଟିକିଏ ଜୋର୍‌ରେ ହସିଲା । ପଚାରିଲି- କ'ଣ ହେଲା ? ଏମିତି ହସିଲୁ କାହିଁକି ? ସେ କହିଲା, ତୁ ବୋଧହୁଏ ଜାଣିନୁ, ସୋମନାଥ ବାବୁ ସମ୍ବଲପୁରରେ ଥିଲାବେଳେ ହସ୍‌ପିଟାଲରେ ଦୀର୍ଘ ଦିନ ପାଇଁ ଟାଇଫଏଡ୍ ରୋଗରେ ଶଯ୍ୟାଶାୟୀ ଥିଲେ । ସେଇ ହସ୍‌ପିଟାଲରେ ଅଙ୍କିତା ନର୍ସ ଥିଲା । ତା'ର ବହୁ ସେବାଯତ୍ନରେ ସୋମନାଥ ବାବୁ ଆରୋଗ୍ୟ ହେଲେ । ସମୟତ କାହାରିକୁ ଅପେକ୍ଷା କରେନି, ଗତାନୁଗତିକ ଭାବରେ ଚାଲିଲା ଆଗକୁ ।

ନାନାଆଡୁ ପ୍ରସ୍ତାବ ଆସି ଅଙ୍କିତାର ବାହାଘର ଠିକ୍ ହେଲା ଜଣେ ଇଞ୍ଜିନିୟରଙ୍କ ସାଙ୍ଗେ, କିନ୍ତୁ ଦୁର୍ଭାଗ୍ୟ ! ମାତ୍ର କୋଡିଏ ହଜାର ଟଙ୍କା ପାଇଁ ବର ଯେତେବେଳେ ବେଦୀରୁ ବାହୁଡ଼ି ଯାଉଥିଲା, ବେଦୀପାଖରେ ଠିଆ ହୋଇ ଏଇ କରୁଣଦୃଶ୍ୟ ଦେଖୁଥିଲେ

ସୋମନାଥ । ବେଦୀ ମୂଳେ ଶ୍ମଶାନର ନୀରବତା ଛାଇ ଯାଇଥାଏ । ପ୍ରକୃତରେ ବର ଯେ ବାହୁଡ଼ି ଯିବ, ଏକଥା ଅଙ୍କିତା କେବେ ମଧ୍ୟ କଳ୍ପନା କରିନଥିଲା । ସମସ୍ତଙ୍କ ମନରେ କୋହ ଆଖିରେ ଲୁହ । ଅଙ୍କିତାର ମା' କାନ୍ଦିକାନ୍ଦି ତଳେ ଲୋଟି ଯାଉଥିଲେ ।

ସେଦିନ ଅଙ୍କିତା ମା'କୁ ସାନ୍ତ୍ୱନା ଦେଇ କହିଥିଲା- ବିବାହଟା କ'ଣ ଜୀବନରେ ଏତେ ଜରୁରୀ ? ଏଥିରେ ବ୍ୟସ୍ତ ହେବାର କ'ଣ ଅଛି । ମୁଁ ଆତ୍ମନିର୍ଭରଶୀଳ, କାହାରି ଉପରେ ଭାର ହୋଇତ ରହିବିନାହିଁ ।

କିନ୍ତୁ ମା'ମନ କାହିଁରେ ବୁଝୁନଥିଲା । ମା' ଜାଣେ ଝିଅ ଜୀବନରେ ଦୁଃଖ କ'ଣ ? ବେଦୀରୁ ବର ବାହୁଡ଼ିଗଲେ ଝିଅକୁ ସମାଜରେ ବାଛନ୍ଦ କରନ୍ତି । କେତେ ଉଲୁଗୁଣା ସେ ଶୁଣେ । କଥାରେ କହିଛି ଝିଅ ଜୀବନ ପରଘରକୁ ।

ଠିକ୍ ସେଦିନ ରାତି ନଅଟା । ଇଞ୍ଜିନିୟର ଯୁବକ ସୋମନାଥ ଯାଇ ପହଞ୍ଚିଲେ ଅଙ୍କିତା ଘରେ- ପ୍ରଥମ ଥର ପାଇଁ ସେ ଅଙ୍କିତା ଘରେ ଅତିଥି ହୋଇଥିଲେ ସେଦିନ । ଅଙ୍କିତାର ବାପା ମା'ଙ୍କ ସହ କଥାବର୍ତ୍ତା ହୋଇ ସେ ଅଙ୍କିତାକୁ ନେଇ ମନ୍ଦିରରେ ତାକୁ ବିବାହ କରିଥିଲେ । ଭଗବାନ ଅଙ୍କିତାର ଦୁର୍ବିସହ ବେଦନାର ଚିତ୍କାରକୁ ଶୁଣି ପାରିଲେ ସତ, କିନ୍ତୁ ନାରୀ ହୃଦୟର ସେହି କରୁଣ ପ୍ରାର୍ଥନାକୁ ସୋମନାଥଙ୍କ ପିତା ଗ୍ରହଣ କରିନଥିଲେ । ପୁଅର ଏଭଳି କାର୍ଯ୍ୟରେ ସେ ଅତ୍ୟନ୍ତ କ୍ଷୋଭ ପ୍ରକାଶ କଲେ । ଅଙ୍କିତାକୁ ବୋହୂ ରୂପେ ଗ୍ରହଣ କରିବାକୁ ଏକବାର ଅସମ୍ମତ ହେଲେ । ସାମାନ୍ୟ ଗୋଟିଏ ନର୍ସକୁ ସେ ବୋହୂ କରିବେ ନାହିଁ । ଯାହାର ଶେବାଶୁଶ୍ରୁଷାରେ ନିଜର ପୁଅ ଆରୋଗ୍ୟ ଲାଭକଲା, ସେ କଥା ସୋମନାଥଙ୍କ ବାପା ଭୁଲିଗଲେ । ସେବାର ଅର୍ଥ ସେ ବୁଝିଲେ ନାହିଁ । ସୋମନାଥ ବାବୁ ଯେଭଳି ବିବାହ କରିଥିଲେ, ଆଜିର କୁର, ହୀନ, ନଗନ୍ୟ ସମାଜ ତାହାକୁ ସ୍ୱୀକାର ମଧ୍ୟ କଲାନାହିଁ । ତେଣୁ ସମାଜ ଦୃଷ୍ଟିରେ ସେ ଏବେ ବି ଅବିବାହିତ ।

x x x x x

ସବୁ ଶୁଣିସାରିବା ପରେ ସୋମନାଥ ବାବୁଙ୍କ ପ୍ରତି ଥିବା ଧାରଣା, ମୋର ବଦଳି ଗଲା । ତାଙ୍କର ଉଦାରତା, ପ୍ରେମ ଓ ମହାନୁଭବତା ପ୍ରତି ମୋର ମଥା ଅବନତ ହୋଇଗଲା । ମନେ ମନେ ଭାବିଲି, ସ୍ନେହ ଓ ପ୍ରେମ, ସତ୍ୟ ସୁନ୍ଦର ଏବଂ ଚିରଶାଶ୍ୱତ ।

ବିବାହ ବେଦୀର ପବିତ୍ର ମନ୍ତ୍ର ପାଠର ଆଜି କିଛି ମୂଲ୍ୟ ନାହିଁ । ଦଶଦିଗପାଳଙ୍କୁ ସାକ୍ଷୀରଖି ବିବାହ କରିବା ଆଜି ଯେମିତି ଏକ ପ୍ରହସନରେ ପରିଣତ ହୋଇଛି । ଯୌତୁକର ଲେଲିହାନ ଅଗ୍ନିଶିଖା ମଧ୍ୟରେ ଦାମ୍ପତ୍ୟ ଜୀବନର ସବୁ ସୁଖସ୍ୱାଦ ପୋଡ଼ିଜଳି ପାଉଁଶ ହେଉଛି । ଏଭଳି ବିବାହ, ବିବାହ ନୁହେଁ । ପ୍ରକୃତ ବିବାହ ହେଉଛି ଦୁଇଟି ମନ ଓ ଆତ୍ମାର ମିଳନ ।

ହୃଦୟର ସହିତ ସୋମନାଥ ବାବୁଙ୍କୁ ଧନ୍ୟବାଦ ଦେଲି । ଏବେ ବି ସମ୍ବଲପୁର ବସ୍‌ରୁ ଓହ୍ଲାଇଥିବା ସେଇ ସୁନ୍ଦରୀ ତରୁଣୀଟି ମୋ ଆଖି ଆଗରେ ବେଳେବେଳେ ନାଚିଉଠେ । ମନେ ମନେ ଭାବେ, ସୋମନାଥଙ୍କ ଆଦର୍ଶକୁ ନେଇ ଆଜି ଯଦି ସମାଜର ସବୁ ଯୁବକ ଆଗେଇ ଆସନ୍ତେ ତେବେ ଯୌତୁକ ଜନିତ ନାରୀ ହତ୍ୟାର ଅବସାନ ନିଶ୍ଚିତଭାବରେ ଘଟନ୍ତା ।

ଏଣିକି ସୋମନାଥ ବାବୁଙ୍କ ସଂଗେ ଦେଖାହେଲେ ବା ସେ ମୋ ଘରଆଡେ ଆସିଲେ ମୁଁ ତାଙ୍କ ବିବାହ ପ୍ରସଙ୍ଗ ଉଠାଏ ନାହିଁ । ଅନେକ ପ୍ରସଙ୍ଗ ପରେ, ମୋର ଏଭଳି ନୀରବତା ଦେଖି ସେ କ'ଣ ଭାବୁଥିବେ, ମୁଁ ଏବେବି କହି ପାରିବିନି । ବିବାହ ପ୍ରସଙ୍ଗକୁ ବାଦ୍‌ଦେଇ ଅନ୍ୟାନ୍ୟ ଗପସପ ହେଉ- ପ୍ରତିଥର ପରି ସେ କିଛି ସମୟ ଗପି ଘରକୁ ଫେରନ୍ତି ।

○●○

# ସ୍ୱପ୍ନର ସମାଧି

ସେବର୍ଷ ଅଜୟା ପ୍ରଥମ ବାର୍ଷିକ କଳାଛାତ୍ରୀ । ଓଠରେ ତା'ର ପଳାସ ଫୁଲର ରଙ୍ଗ, ଗୋଲାପ ଫୁଲର ହସ । ଢ଼ଳଢ଼ଳ ଆଖି ଦୁଇଟି । ସତେଯେମିତି କଥା କହେ । ହସି ଦେଲେ ହେନା ଫୁଲ ଝରିଯାଏ । ସେହି ହସ ଭିତରେ ଜିତୁର ମନଟା କେମିତି କେଜାଣି, ଭାସିଯାଏ ଅନେକ ଦୂରକୁ........

ଛାତିରେ ଅସହ୍ୟ ବେଦନା, ସତେ ଯେମିତି ନିଆଁ ଜଳୁଛି । ମନ କଥାକୁ ମନ ଭିତରେ ଚାପି ଚାପି ଛାତି ଫାଟି ଯିବାକୁ ବସିଲାଣି । କେତେ ଆଉ ସମ୍ଭାଳିବ ? ନା, ନା, ଏଥର ସେ ନିଶ୍ଚୟ କହିଦବ । କିଏ କଣ ଭାବିଲେ ଭାବୁ, ଘୃଣା କଲେ କରୁ ପଛେ କିନ୍ତୁ ସେ ଅଜୟାକୁ ନିଶ୍ଚୟ ସବୁ ଖୋଲି କହିଦବ । ମନୋଜ୍ ହରପ୍ରସାଦ କି ଭୂପେନ୍ ଯାହା କହିବେ କହନ୍ତୁ- ଏମାନଙ୍କୁ ସେ ଡରିନି, ଏମିତିକି ତା' ଅନ୍ତରଙ୍ଗ ବଂଧୁ ରୁମାନ୍‌କୁବି । କହିଦେଲେ କଣଟା ହେଇଯିବ ଯେ ?

ସାଗର ବୁକୁରେ ସ୍ୱପ୍ନର ଲହରୀ । ସେହି ଲହରୀ ଭିତରେ ପ୍ରୀତିର ମୁକ୍ତା ବିନ୍ଦୁମାନେ ଜିତୁକୁ ଚାହିଁ ଫିକ୍‌ଫିକ୍ ହସୁଛନ୍ତି । ଜିତୁକୁ ଉପହାସ କରୁନାହାନ୍ତି ତ ? ଓଃ....ପ୍ରବଳ ଶୀତରେ ମଧ ଜିତୁର କପାଳରେ ଟୋପାଟୋପା ଝାଳ ।

ସେ ମନରେ ସାହସ ବାନ୍ଧି ପଛରୁ ଡାକିଲା- ''ଟିକଏ ଶୁଣିବକି ଅଜୟା'' । ସ୍ୱପ୍ନ ପୁରିର ରାଜକୁମାରୀଟି ହଠାତ୍ ବୁଲିପଡ଼ି ପଚାରିଲା- ''କାହିଁକି ? କ'ଣ ପାଇଁ ଡାକିଲ''? ବାସ୍ ସେତିକି । ଅଜୟା ଚାଲିଗଲା କ୍ଲାସ୍‌ରୁମ୍ ଭିତରକୁ । ଦୀର୍ଘଦିନ ବିତିଗଲା, କିନ୍ତୁ ଅଜୟାର ସେହି ଛୋଟ ପ୍ରଶ୍ନଟିର ଉତ୍ତର ଏଯାଏ ଦେଇ ପାରିଲାନି ଜିତୁ ।

କଲେଜ୍ କ୍ୟାମ୍ପସ୍ ଭିତରେ ଦେଖାହେଲେ ଅଜୟା ଜିତୁକୁ ଘୁରି ଘୁରି ଚାହିଁ, କିଛି କହେନା । ଜିତୁର ମନଟା ଛଟ୍‌ପଟ୍ ହୁଏ । ଝିଅ ଗୁଡାକ ଭାରି ଫୁଲେଇ । ମନ ଭିତରଟା ପଛେ କୋରି ହୋଇ ଯାଉଥିବ । ବାହାରକୁ ଫୁଟାଣି ଛାଡ଼ିବେନି । ଯେଉଁ ପୁଅକୁ ଭଲ

ପାଉଥିବେ ତାକୁ ଦେଖି ନଦେଖିଲା ପରି ହେଉଥିବେ । ଜିତୁ ଶେଖର ମହାନ୍ତି କିନ୍ତୁ ଛାଡ଼ିବା ପିଲା ନୁହେଁ । କଲେଜ୍‌ର କାନ୍ଥବାଡ଼ ସବୁ ସାକ୍ଷୀ ପଡ଼ିବେ । ଅଜୟା ତାକୁ ଭଲପାଏ । ଅଧ୍ୟାପକ ବୋଲି କ'ଣ ଛାତ୍ରୀକୁ ଭଲ ପାଇବାଟା ପାପ ?

ସେଦିନ କଲେଜ୍ ଛାତ୍ରଛାତ୍ରୀମାନେ ମାଡ୍ରାସ୍‌ର କାଞ୍ଚିପୁରମ୍ ପରିଦର୍ଶନରେ ବାହାରିଥାନ୍ତି । ସେଠାରୁ ଯିବେ କନ୍ୟାକୁମାରୀ । ଏକ୍ସକରସନ୍ ଦାୟିତ୍ୱରେ ଥାଏ ଜିତୁ । ସେ ଯେତେ ଅନୁରୋଧ କଲେବି ଅଜୟାର ଏକାଜିଦ୍ । ସେ ଯିବନି । ସେ ଯିବନି, ଏକଥା ଜିତୁ କଳ୍ପନା ସୁଦ୍ଧା କରିନଥିଲା । ଯେତେବେଳେ ଜିତୁ କଳ୍ପନା ଉପରେ କଳ୍ପନାକୁ ଯୋଡ଼ିଯୋଡ଼ି ଅନେକ ପାହାଚ ତୋଳି ସାରିଥିଲା, ଠିକ୍ ସେତିକିବେଳେ ଅଜୟା- ସବୁ ପାହଚକୁ ଭାଙ୍ଗି ଚୂନା କରିଦେଲା ଏକାଥରକେ ।

ଆଖିରେ ଆଖିଏ ଲୁହ ନେଇ ଜିତୁ ଫେରି ଆସିଲା ତା ରୁମ୍‌କୁ । ତା'କଥା ଅଜୟା ରଖିଲାନି । ଏଇଟା ମସ୍ତବଡ଼ ଅପମାନ । ଖାଲି ଅପମାନ ନୁହେଁ, ଜିତୁ ଜୀବନର ସବୁଠାରୁ ବଡ଼ ଦୁଃଖ ମଧ୍ୟ ।

ଝରକା ଖୋଲି ବାହାରକୁ ଚାହିଁଲା ଜିତୁ । ମେଘ ଖଣ୍ଡ ସବୁ ଏଣେ ତେଣେ ଭାସି ବୁଲୁଛନ୍ତି । ସତେ ଯେମିତି ଗଦାଏ ଭିଣାତୁଳା ଉଡି ଉଡି ଆକାଶ ଦେହରେ ମିଶି ଯାଉଛନ୍ତି । ପଛରୁ କଲେଜ୍ ପିଅନ ଆସି ଡାକିଲା- ଅଫିସ୍‌କୁ ଯାଇ ଫୋନ୍ ଉଠାଇଲା ଜିତୁ । ପରିଚିତ କଣ୍ଠସ୍ୱର ଶୁଣି ସେ ଆଶ୍ଚର୍ଯ୍ୟ ହେଲା । "ଆଉ ମତେ ଏମିତି ଚାହିଁବନି କଲେଜ କ୍ୟାମ୍ପସ୍‌ରେ । ଦେଖିଛି ଏମିତି କେତେ ପ୍ରେମ ପୂଜାରୀଙ୍କୁ । ସେମାନେ ତାଙ୍କ ମନ ଭିତରେ ମନ୍ଦିର ତୋଳି ପ୍ରେମିକାର ମୂର୍ତ୍ତିଟିକୁ ସ୍ଥାପନା କରି ଖୁବ୍ ଶୀଘ୍ର ପୂଜା ଆରମ୍ଭ କରିଦିଅନ୍ତି କିନ୍ତୁ ଏଣେ ପ୍ରେମିକା ମନର ମନ୍ଦିରରେ ମୂକଦୁଆ ପଡ଼ିଲାଣି ନା ନାହିଁ ସେକଥା ବୁଝିବାକୁ ଚେଷ୍ଟା କରନ୍ତି ନାହିଁ"- ଜିତୁ ଫୋନ୍ ରଖିଦେଲା ।

ଏଗୁଡ଼ା ଭାରି ଅପମାନ । ଭଲ ପାଇବ ବୋଲି କ'ଣ ଝିଅମାନଙ୍କଠୁଁ ଏତେ କଥା ଶୁଣିବ ?... ସବୁ ଶୁଣି ରୁମାନ୍ କହିଲା ଭଲ ପାଇବାଟା ଏତେ ସହଜ ନୁହେଁରେ ଜିତୁ, କିଛି କଷ୍ଟ କରିବାକୁ ବି ପଡ଼େ । ସବୁ ଝିଅ କ'ଣ ଏତେ ସହଜରେ ଭଲ ପାଇଯାନ୍ତି ?

ରୁମାନ୍‌ଟା ଯାହାକୁହେ, ବେଳେବେଳେ ସତ ହୁଏ । ତାକୁ କେହି କେବେ ଝିଅଙ୍କ ସଂଗେ କଥା ପଦେ କହିବାର ଦେଖିନି । ପ୍ରଫେସର୍‌ଙ୍କ ଝିଅ ସଂଗେ ପଦେ କଥା ହେବା

ପାଇଁ, କଲେଜ୍‌ର ଅଧେ ପିଲା ତାଙ୍କ ଘରେ ବଜାର ସଉଦାରୁ ପରିବା ପର୍ଯ୍ୟନ୍ତ କରିବା ପାଇଁ ପଠାନ୍ତି ନାହିଁ । କାରଣ ପ୍ରଫେସରଙ୍କ ଘରଯାଏ ଯିବାକୁ କିଛି ଗୋଟାଏ ଆଳ ତ ଦରକାର ! ରୁମାନ୍ ଏମିତି ପିଲାଙ୍କୁ ଦେଖି ହସେ, କହେ ଝିଅମାନଙ୍କର ମୁହଁ କାହିକି ବଢ଼େ କି ? ଏମିତି କେତେଟା ବିକଳିଆ ପିଲାଙ୍କ ପାଇଁ ।

ଜିତୁ ମନେ ମନେ ଭାବେ, ମଣିଷ କଣ ନଚାହେଁ ? କିନ୍ତୁ ପାଏ କ'ଣ ? ଜିତୁର ସବୁ ସାଂଗମାନେ ପ୍ରାୟ ଅଜୟା କଥା ଜାଣିଗଲେଣି । ଏ ବିଷୟରେ ଶୁଣିଲେ ମଣିକେତନ କହେ- "ଅସମ୍ଭବ, ଅସମ୍ଭବ, ଦେଖିବ ସେମାନେ ଜୀବନରେ ଦୁଇଟି ଭଲ ସାଙ୍ଗ ବା ବଂଧୁ ହୋଇପାରିବେ କିନ୍ତୁ ସ୍ୱାମୀ ସ୍ତ୍ରୀ ହୋଇ ପାରିବେନି । ଅମୀୟ କହେ- ଧେତ୍, ଏମିତି କଥା ଗୁଡ଼ାକ କହିବୁନି ଆଉଦିନେ । ଜାଣିଛୁ ? ଜିତୁର ଅବସ୍ଥା କ'ଣ ହେବ ? ସେ ପାଗଳ ହୋଇଯିବ ।"

ଅନୁପ୍ କହେ- ତୁମେ କେତେଟା ଅଛ, ଭଲ ପାଇପାରିବନି କି କିଏ କାହାକୁ ଭଲପାଇଲେ ସହି ପାରିବନି । ଅନେକ କହନ୍ତି ମଣିକେତନ ଜ୍ୟୋତିଷଶାସ୍ତ୍ର ପଢୁଛି । ସମସ୍ତେ ଏକଥା ଶୁଣି ଠୋ ଠୋ ହୋଇ ହସନ୍ତି । ମଣିକେତନ କହେ, ଅଜୟା ବି ଜିତୁକୁ କଲେଜ କ୍ୟାମ୍ପାସ୍ ଭିତରେ ଘୁରି ଘୁରି ଚାହିଁବାର ଅନେକ ଥର ସେ ଦେଖିଛି ।

x x x x x

ସେଦିନ ସୋମବାର । ରତନ୍, ଅନୁପ୍, ମଣିକେତନ ଆଉ ଜିତୁ ଶେଖର ସମସ୍ତେ ଅଜୟାକୁ ଖୋଜିଖୋଜି ହାଲିଆ ହେଲେଣି । ହଷ୍ଟେଲ୍‌ରେ କି କଲେଜ୍ କ୍ୟାମ୍ପସ୍‌ରେ ନାହିଁ । ଏପରିକି ଲାଇବ୍ରେରୀର କୋଣେ କୋଣେ ଖୋଜା ସରିଲାଣି । ଶେଷରେ ଟେବୁଲ୍ ଉପରେ ବେକ ମାଡ଼ି ଘୁମେଇ ପଡ଼ିଥିବା ପିଅନକୁ ପଚରା ହେଲା- "ଆଜି ଅଜୟା ଲାଇବ୍ରେରୀକୁ ଆସିଥିଲା କି ?"

ପିଅନ ଆଖି ମଳି ମଳି ଉଠି କହିଲା- "ଜାଣିନ କି ବାବୁ, ଅଜୟା ଦେଇ ପରା କାଲି ସନ୍ଧ୍ୟା ବସ୍‌ରେ ଗାଁ କୁ ଗଲେ । ଗଲାବେଳେ ଗୋଟାଏ କାଗଜ ପୁଡ଼ା ଦେଇଗଲେ, କହିଲେ, ସମସ୍ତଙ୍କୁ ଗୋଟାଏ ଗୋଟାଏ ଦେଇଦେବୁ । ଆଲମିରା ଉପରେ ମୁଁ ରଖିଛି ।" ଅନୁପ୍ କାଗଜ ପୁଡ଼ାକୁ ତରତର ହୋଇ ଖୋଲି ପକାଇଲା, ଦେଖିଲା ଗୁଡ଼ାଏ ନାଲ

ଲଫାପା । ଅଜୟାର ବାହାଘର ନିମନ୍ତ୍ରଣ ପତ୍ର । ରତନ୍ ଓ ଜିତୁ ଅବାକ୍ ହୋଇ ଦୁହେଁ ଦୁହିଁଙ୍କୁ ଚାହିଁଲେ । ରତନ କହିଲା- ଝିଅ ଗୁଡ଼ାକ ଭାରି ମାରାତ୍ମକ । ଜିତୁର ଆଖି ଲାଲ୍ ପଡ଼ିଗଲା । ସେ ସମସ୍ତଙ୍କୁ ଲୁହ ଲୁଚେଇବାକୁ ଚେଷ୍ଟା କରି ମଧ୍ୟ ହାରିଗଲା ।

ସମୟ କେମିତି କେଜାଣି ଚକ ପରି ଗଡ଼ି ଗଡ଼ି ଯାଇ କେଉଁଠି ପହଞ୍ଚିଯାଏ, ଜଣା ପଡ଼େନି । ଅନେକ ଦିନ ବିତି ଗଲାଣି ପାଣି ସୁଅପରି । ଅତୀତର ଦିନ ସବୁ ଏବେ ହଜି ଗଲେଣି ସେଇ ସୁଅଭିତରେ ।

x x x x x

ଦାଣ୍ଡପଟରେ ତଳ ପାହଚ ଉପରେ ଖୁଣ୍ଟିକି ଆଉଜି ଜିତୁ ଠିଆ ହୋଇଥାଏ । ଅଳକା ପଛପଟୁ ଆସି ତା' ଆଖି ବୁଜିଦେଲା । ଜିତୁ ପଛକୁ ଚାହିଁଲା- ଦେଖିଲା ଅଳକା ହସୁଛି- ‘‘ଏଠି କ'ଣ ଏମିତି ଚୁପ୍ ଠିଆ ହୋଇଛମ ? ସେମାନେ ସମସ୍ତେ ପରା ବାହାରିଲେଣି ? ସକାଳୁ ସକାଳୁ ନଗଲେ ବଣଭୋଜିରେ ମଜା ହୁଏନି ।’’ ଅଳକା ପ୍ରଶ୍ନସୂଚକ ଆଖିରେ ଚାହିଁଲା ଜିତୁକୁ । ଜିତୁ ମୁହଁ ଶୁଖେଇଛି । ପଚାରିଲା ‘‘କ'ଣ ହେଲା’’? ଜିତୁ ହସିଦେଲା । ଇଚ୍ଛା ଥିଲେ ବି ସେ ଅଳକାକୁ କିଛି କହି ପାରେନା, ମାତ୍ର ଦୁଇଟି ମାସହେଲା ଅଳକା ତା ସ୍ତ୍ରୀ ହୋଇ ଘରକୁ ଆସିଛି । ଜିତୁ ତାକୁ କ'ଣ କହିବ ? ସେ ଶୁଣିଲେ କ'ଣ ଭାବିବ ? ଜିତୁ ଅଳକା ପ୍ରତି ଅବହେଳା କରେନା କିନ୍ତୁ ତା' ସହିତ ହସିପାରେ, ହେଲେ କାନ୍ଦି ପାରେନା । ମନର ଦୁଃଖକୁ ମନରେ ଚାପି ରଖିବାକୁ ସେ ବାଧ୍ୟହୁଏ ।

ତିନିବର୍ଷ ବିତି ଗଲାଣି । ଅଜୟାର କିଛି ଖବର ନାହିଁ । ନିମନ୍ତ୍ରଣ ପତ୍ରରେ କୌଣସି ଠିକଣାବି ନଥିଲା । ତା'ର କଣ ମନେ ପଡ଼େନା କଲେଜ୍ ଜୀବନ କଥା ? କେବେବି କ'ଣ ଜିତୁ କଥା ତା'ର ମନ ପଡ଼େନା ?? କିନ୍ତୁ ଜିତୁ କାହିଁକି ତାକୁ ଭୁଲି ପାରେନା କେଜାଣି ? ଭୁଲି ପାରେନା ବୋଲିତ ଦୁଃଖ ପାଏ ।

ସେଦିନ କୋଣାର୍କରେ ଗାଡ଼ି ପହଞ୍ଚିଲା ଠିକ୍ ଦିନ ଦଶଟାରେ । ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ଗଛ ଛାୟା ତଳେ ଚୁଲି ଖୋଳା ଆରମ୍ଭ ହୋଇଗଲା । ପରିବାକଟା, ମସଲାବଟା କାମ ସବୁ ଗୋଟିକି ପରେ ଗୋଟିଏ ଆଗେଇ ଚାଲିଲା । କାଠରେ ନିଆଁ ଧଇଲା । ମୋହନ କହିଲା ବେଶି ଗୁଡାଏ ଆଇଟମ୍ କରି ଲାଭନାହିଁ । ଅଯଥା ସମୟ ନଷ୍ଟ । ପଲାଉ, ଖିରି,

ତରକାରୀ ଆଉ ଖଟା । ବାସ୍ ଏତିକି । ମୋହନ ଭଲ ରାନ୍ଧୁଣିଆ । ସବୁ ବଣ ଭୋଜିରେ ମୁଖ୍ୟ ରାନ୍ଧୁଣୀଆ ସିଏ ।

ଭଲ ବା ମନ୍ଦ, ଯା' ହେଉ, ରୋଷେଇ ସରିଲା । ଖଲିପତ୍ର ପଡ଼ିଲା । ଧାଡ଼ି ଧାଡ଼ି କରି ଫୁଲ କୁଣ୍ଡ ସଜେଇଲା ପରି ଜିତୁ ଗ୍ଲାସ ସବୁ ଥୋଇଦେଲା । ହଠାତ୍ ଏତିକିବେଳେ ରୁମାନ୍ କହିଲା, ପିଇବା ପାଣି ଅଣ୍ଟିବନି ।'' ବଣଭୋଜି ଜାଗାର ପାଇପ୍‌ଟା ହଠାତ୍ ବନ୍ଦ ହୋଇଗଲାଣି । ପାଣି କେଉଁଠୁଁ ଆସିବ ? ରୁମାନ୍ ଏଣିକି ତେଣିକି ଚାହିଁ ଅଳ୍ପଦୂରରେ ଥିବା ଗାଁ ଆଡେ ହାତ ଦେଖାଇଲା । ବେଶି ଦୂର ବି ନୁହେଁ । ରୁମାନ୍ ଓ ଜିତୁ ଦୁଇଟା ବାଲ୍‌ଟି ଧରି ଧାଇଁଲେ ।

ଲଙ୍କା ଆମ୍ବ ବଣ ଭିତରେ ଶିବ ମନ୍ଦିର । ମନ୍ଦିର କରକୁ ଲାଗି କୋଇଲୀବାହୁଡ଼ା ଗାଁ । ଗାଁର ପ୍ରଥମ ଘରଟିକୁ ଯାଇ କୂଅ ଦଉଡ଼ିଟିଏ ମାଗିଲେ । କିଛି ସମୟପରେ ଜଣେ ସ୍ତ୍ରୀ ଲୋକ କୂଅ ଦଉଡ଼ି ଧରି ବାହାରକୁ ଆସିଲା । ଜିତୁ ଓ ରୁମାନ୍ ନିଜ ଆଖିକୁ ବିଶ୍ୱାସ କରି ପାରିଲେନି ।

ଠିକ୍ ସେଇ ମୁହଁ, ସେଇ ଚାହାଣୀ । ଓଢ଼ଣା ଭିତରୁ ମଧ୍ୟ ବେଶ୍ ବାରି ହେଉଥିଲା ସେଇ ଚିହ୍ନା ଚିହ୍ନା ମୁହଁଟିକୁ । ସେଇ ଡଉଲ ଡାଉଲ ଚେହେରା । କିନ୍ତୁ ଜିତୁ ହଠାତ୍ ଚମକି ପଡ଼ିଲା । ସେ ଆଜି ତା' ନିଜ ଆଖିରେ କ'ଣ ଦେଖୁଛି- ସେଇ ସୁନ୍ଦରୀ ଗୋଲାପ ରାଣୀର ଏ କି ବେଶ ! ସୁନ୍ଥାରେ ସିନ୍ଦୁର ନାହିଁ, ହାତରେ ଚୁଡ଼ି ନାହିଁ । ଅଜୟା ଏମିତି ଧଳାଶାଢ଼ୀ ଖଣ୍ଡେ କାହିଁକି ପିନ୍ଧିଛି ? ଜିତୁ ନିର୍ବାକ ହୋଇ ଚାହିଁରହିଥିଲା ଅଜୟାକୁ । ରୁମାନ୍ ଧୀର ସ୍ୱରରେ କହିଲା ''ତମେ କଣ ଅଜୟା, ଏଇନେ ଏକା'- ଅଜୟା ଆଖିରୁ ଲୁହ ପୋଛିଲା । ଉତ୍ତର ପରିବର୍ତ୍ତେ ମୁଣ୍ଡ ତଳକୁ କଲା ।

ଆଜି ଅତୀତ ଭାସି ଉଠିଛି, ଅଜୟା ଆଖି ଆଗରେ । କଲେଜ୍ ଜୀବନ କଥା ମନେ ପଡ଼ି ତା' ଛାତି ଫାଟି ଯାଉଛି । ତା' ମୁହଁକୁ ରୁମାନ୍ ଓ ଜିତୁ ଉତ୍ତର ଆଶାରେ ଚାହିଁ ରହିଛନ୍ତି । କିଛି ସମୟର ନିରବତା ପରେ ଅସ୍ପଷ୍ଟ ସ୍ୱରରେ ଅଜୟା କହିଲା- ''ବ୍ରେନ୍ ଆକ୍ସିଡେଣ୍ଟରେ ଦେଢ଼ବର୍ଷ ହେଲା ସେ ଚାଲିଗଲେ । ଏପରିକି ଶବ ସୁଦ୍ଧା ଆମକୁ ମିଳିଲାନି ।'' ଦୀର୍ଘ ନିଶ୍ୱାସ ପକାଇଲା ଜିତୁ । ଆଖିରେ ଆଖିଏ ଲୁହ ନେଇ, ପାଣି ଧରି ଦୁହେଁ ଫେରିଲେ ବଣଭୋଜିଠିକି । ଦିହେଁ କାହାରିକୁ କିଛି କହିଲେ ନାହିଁ । ଭୋଜି ସରିଲା । ବସ୍ ପୁଣି ସମସ୍ତଙ୍କୁ ଧରି ରାଜପଥରେ ଆଗକୁ ଚାଲିଲା ।

ରାତିସାରା ଜିତୁକୁ ନିଦ ନାହିଁ । ଅଳକା ପାଖରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ସତରେ, କି ଶାନ୍ତିରେ ଶୋଇଛି ଅଳକା । ଜିତୁ କିନ୍ତୁ ଅଜୟାର ଦୁଃଖରେ ଜଳି ଜଳି ପାଉଁଶ ହେଉଛି । ଦିନ'ତ ରହେନା । ସମୟ ସ୍ରୋତରେ ଭାସିଯାଏ ଆଗକୁ । ଦୁଃଖରେ ଦିନକୁ ଦିନ ଭାଙ୍ଗି ପଡ଼େ ଜିତୁ ।

ଅନ୍ତରଙ୍ଗ ବନ୍ଧୁ ରୁମାନ୍ କହେ- "ଦୁଃଖ କରିଆଉ ଲାଭ ନାହିଁ । ଯଦି ନିହାତି ଚାହୁଁଛୁ, ଆଉ ଥରେ ଯାଇ ଅଜୟାକୁ ଦେଖିଆସ୍ ।"

ଜିତୁ ମନେ ମନେ ସ୍ଥିର କରେ, ରୁମାନ୍ ଠିକ୍ କହିଛି ସେ ଆଉ ଥରେ ଅଜୟାକୁ ଭେଟିବ । ଖାଲି ଭେଟିବ ତା' ନୁହେଁ, ଅଜୟା ଯଦି ତା' କଥାରେ ଏକମତ ହେବ ତେବେ ସେ ଅଜୟାକୁ ବିବାହ କରି ତା'ର ସମସ୍ତ ସୁଖ ସମୃଦ୍ଧିକୁ ଫେରାଇ ଆଣିବ । ଅଳକା ପାଇଁ ଜିତୁର ଚିନ୍ତା ନାହିଁ । ଜିତୁର ସମସ୍ତ କଥାରେ ସେ ସବୁବେଳେ ଏକମତ । ତା'ର କେବେ ମଧ୍ୟ ଜିତୁ ବିରୁଦ୍ଧରେ ଆପତ୍ତି ବା ଅଭିଯୋଗ ନାହିଁ । ଅଳକା ଉପରେ ଜିତୁର ବିଶ୍ୱାସ ଅଛି- ସେ ଅଳକାକୁ ବୁଝାଇ ପାରିବ । ଯାହା ହେଉ ପଛେ ସେ ଆଉ ଅଜୟାର ଦୁଃଖ ସହିପାରିବନି ।

ଦିନେ ସଞ୍ଜ ହୋଇ ଆସୁଥାଏ । ଜିତୁ ଅଫିସ୍ କାମରେ ବାହାନା ଦେଖେଇ ବସ୍ ଧରିଲା କୋଇଲୀବାହୁଡା ଗାଁ ଅଭିମୁଖରେ । ରାତି ଦଶଟା ସୁଦ୍ଧା ଫେରିବାର ପ୍ରତିଶ୍ରୁତି ଦେଇଥିଲା ଅଳକାକୁ ।

କିଛି ସମୟ ପରେ ବସ୍ ପହଞ୍ଚିଲା କୋଇଲୀବାହୁଡ଼ାରେ । ସେଦିନ ଥିଲା ବଉଳ ଅମାବାସ୍ୟା । ଛୋଟ ଗାଁଟିରେ ଅନ୍ଧାର ସବୁଆଡ଼େ ଛାଇ ଗଲାଣି । ରାସ୍ତାରେ କାଁ ଭାଁ କେମିତି ଗୋଟିଏ ଯୋଡ଼ିଏ ବତୀଖୁଣ୍ଟ । ରାସ୍ତାକଡ଼ରେ ଆମ୍ବତୋଟାଟା ଖାଁ ଖାଁ ଲାଗୁଥାଏ । ଧୀରେ ଧୀରେ ଅଜୟା ଘରର ପଥର ପାଚେରୀ ପଛପଟେ ଜିତୁ ଯାଇ ଠିଆହେଲା । ଦୂରରୁ ଦେଖିଲା ଗୋଟିଏ ଅତିସୁନ୍ଦରୀ ସ୍ତ୍ରୀ ସଞ୍ଜ ଦୀପଟିଏ ଧରି ବାରି ପଛପଟର କୂଅମୂଳ ଚଉରା ପାଖକୁ ଆସିଲା । ଜିତୁ ପାଚେରୀ ଉହାଡ଼ରେ ଲୁଚିଗଲା ।

ଚଉରା ମୂଳେ ମୁଣ୍ଡିଆମାରି ସ୍ତ୍ରୀ ଟି ଯେତେବେଳେ ଫେରିଯାଉଥିଲା ଠିକ୍ ସେତିକିବେଳେ ତା ଓଢ଼ଣାଟି ଖସି ପଡ଼ିଲା କାନ୍ଧ ଉପରକୁ । ଜିତୁର ଚିହ୍ନିବାରେ ଆଉ ଅସୁବିଧା ରହିଲା ନାହିଁ - କାଳ ବିଳମ୍ବ ନକରି ସେ ପଛରୁ ଡାକିଲା "ଅଜୟା" ! ଅଜୟା ବୁଲିପଡ଼ି କହିଲା ଏକଣ ? "ତୁମେ ଏତେବେଳେ ଏଠି କାହିଁକି?"

ଜିତୁର ବାକ୍ୟ ସ୍ଫୁରିଲା ନାହିଁ । ଏ ସେହି ଅଜୟା'ନା କୌଣସି ଏକ ଦେବୀ ମୂର୍ତ୍ତୀ ? ଲାଲରଙ୍ଗର ଶାଢ଼ୀ, ସୁନାଗହଣାର ଛାଇ ହୋଇଯାଇଛି ତା' ଗୋଲାପ ଫୁଲର ଦେହଟି । ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ । ଜିତୁ ଏ କ'ଣ ଦେଖୁଛି ? ସେ ଭୁଲ ଦେଖୁନାହିଁ ତ ? ଜିତୁକୁ ନିରବ ରହିବାର ଦେଖି ଅଜୟା ହସିହସି କହିଲା, ଏମିତି ଚୁପ୍ ହେଇଗଲେ ଯେ ? ମନର ସବୁ ସାହସକୁ ଏକାଠି ସଂଗ୍ରହ କରି ଜିତୁ ପଚାରିଲା- ''ସେଦିନ ପରା କହୁଥିଲ ତୁମ ସ୍ୱାମୀ.... ଜିତୁ କଥାରେ ବାଧା ଦେଇ ଅଜୟା କହିଲା ସେମିତି କଥା ଆଉ ତୁଣ୍ଡରେ ଧରନା ଜିତୁ । ଭଗବାନ ବଡ଼ଲୋକ, ଆକ୍ସିଡେଣ୍ଟ ପରେ ପରେ ମୋ ସ୍ୱାମୀ ମୁକ ହୋଇଯାଇଥିଲେ । ବମ୍ବେ ହସ୍‌ପିଟାଲ୍‌ରେ ଜଣେ ସୃଦୟ ବ୍ୟକ୍ତି ତାଙ୍କୁ ସାହାଯ୍ୟ କରୁଥିଲେ । ଚିକିତ୍ସା ଚାଲିଥିଲା । ମୋ ଭାଗ୍ୟଭଲ ଦେଢ଼ବର୍ଷ ପରେ ତାଙ୍କ ପାଟି ଖୋଲିଲା । ସେ ଭଦ୍ରଲୋକ ନିଜେ ଏଇ ଦଶଦିନ ତଳେ ତାଙ୍କୁ ଆଣି ଘରେ ଛାଡ଼ି ଦେଇଗଲେ । ଧନ୍ୟ ସେ ଭଦ୍ରଲୋକ । ଆମ ପାଇଁ ସେ ଭଗବାନ ଜିତୁ । ଆସ, ତାଙ୍କୁ ଦେଖିଯିବ । ସେ ଭାରି ଭଲ । ତୁମକୁ ଦେଖିଲେ ଖୁବ୍ ଖୁସିହେବେ ।

ଜିତୁ କ'ଣ କହିବ ଭାବିପାରିଲାନି । ଅଜୟା ଖୁବ୍ ବାଧ୍ୟ କଲା କିନ୍ତୁ ଜିତୁର ଅଜୟା ଘରକୁ ଯିବାପାଇଁ କେଜାଣି କାହିଁକି ମନ ଡାକିଲାନି । ହାତଯୋଡ଼ି ଜିତୁ କହିଲା ''ମତେ କ୍ଷମା ଦିଅ ଅଜୟା, ଆଜି ନୁହେଁ, ଆଉ କେବେ ଆସିବି ।'' ~~ହାତଯୋଡ଼ି କହି~~ ଜିତୁ ଫେରନ୍ତା ବସ୍‌ଚଢ଼ି ଘରକୁ ଫେରିଲା ।

ଅଂଧକାରର କଳାରଙ୍ଗ ଭିତରେ ଦିନର ଆଲୁଅ ଖୋଜି ଖୋଜି ପକ୍ଷୀ ସବୁ ବସାକୁ ଫେରିଲେଣି । ଅସ୍ତମୀତ ସୂର୍ଯ୍ୟର ଲୋହିତ କିରଣ ରେଣୁ, ଏବେବି ସମୁଦ୍ରର ବେଳାଭୂମିରେ ବିଛେଇ ପଡ଼ିଛି । ଦୂର ମଶାଣି ଭୂଇଁରେ ମଣିଷ ଦେହରେ ଡହ ଡହ ନିଆଁ ଜଳୁଛି । ଜଳନ୍ତା ନିଆଁ ଭିତରୁ କଞ୍ଚା ମାଂସର ଲୋଭ ଛାଡ଼ି ନପାରି ମୂର୍ଖ ଶୃଗାଳ ଚାକି ବସିଛି ଶ୍ମଶାନ ବରଗଛ ତଳେ । ଷ୍ଟେଟ୍ ଟ୍ରାନ୍ସପୋର୍ଟର ଦଦରା ନାଲିବସ୍‌ଟା ଘୁଁ ଘୁଁ ଶବ୍ଦ କରି ଆଗକୁ ଚାଲିଛି ।

ପାର୍କ ସାମ୍ନାରେ ବସ୍ ଠିଆହେଲା । ବସ୍‌ରୁ ଓହ୍ଲାଇ ଜିତୁ ସିଧା ପାର୍କ ଭିତରକୁ ଗଲା- ମାଳିକି ମାଗିଲା ଗୋଟିଏ ନୀଳ ଗୋଲାପ । ହାତରେ ଫୁଲଟିଏ ଦେଖି ଅଳକା ପଚାରିଲା- ''ଏତେ ଶୀଘ୍ର ଅଫିସ୍ କାମ ସରିଗଲା ? ଫୁଲଟି କୋଉଁଠୁ ଆଣିଲ ? ଜିତୁ ଖୁବ୍ ଧିରେ କହିଲା - 'ପାର୍କରୁ' । ଭିତରୁ ଦାଣ୍ଡ କବାଟ ବନ୍ଦ କଲା ଜିତୁ । ଅଳକାକୁ କୋଳକୁ ଟାଣିଆଣି ତା' ଗଭାରେ ଖୋସିଦେଲା ନୀଳ ଗୋଲାପଟିକୁ । ଆଙ୍କିଦେଲା ପ୍ରୀତିର ଅନେକ ଚୁମ୍ବନ ; ଅଳକା ଆଜି ଆହୁରି ସୁନ୍ଦର ଦିଶୁଛି ତା'କୁ । ଅଳକା ପୁଣି ଥରେ ପଚାରିଲା- ''ଅଫିସ୍ କାମ ସରିଲାତ'' ? ଅପରାଧୀଟି ପରି ଅନୁଚ୍ଚ ସ୍ୱରରେ ଜିତୁ କହିଲା ''ହଁ'' ।

●

# ପ୍ରତୀକ୍ଷା

ବିଷାକ୍ତ ନିଷ୍ଠୁର ସାପଟା ବାୟା ଚଢେଇ ବସା ଉପରକୁ ଉଠିଆସି ତା'ର ଚିକି ଚିକି ଛୁଆ ଗୁଡାଙ୍କୁ ଗୋଟା ଗିଳି ଦେବାକୁ ଆରମ୍ଭ କଲାଣି । ମା ଚଢେଇର ଛାତି ଚିଡି ଚିଡି ହୋଇ ଫାଟି ଯାଉଛି ।

ଧୈର୍ଯ୍ୟ ଧରିବାର ଶକ୍ତି ଆଉ ନାହିଁ । ଆଖିର ଲୁହ, ଲହୁ ହୋଇ ବୋହି ଯାଉଛି । ସେ ଭାବୁଛି କାହାକୁ କହିବ ? କାହାକୁ ଡାକିବ ? କିଏ ବା ଏ ଅସମୟରେ ତାକୁ ସାହାଯ୍ୟ କରିବ ?

କେତେ ଡାକିଲାଣି । ଡାକି ଡାକି ତା' ତଣ୍ଟି ଫାଟିଲାଣି ହେଲେ କେହି ଶୁଣୁ ନାହାନ୍ତି । ସମସ୍ତେ ଡରନ୍ତି ସେଇ ବିଷଧର ସାପଟାକୁ । ନିଜ ଉପରେ ନ ପଡିଲେ କିଏ ବା କହିଁକି ଅନ୍ୟକୁ ସାହାଯ୍ୟ କରିବ ?

ସମସ୍ତେ ବଡ ବଡ କଥା କହିବେ । ଅସଲ ବେଳକୁ କେହିବି ପିଠିରେ ପଡିବେ ନାହିଁ । ଚୁପ୍ ଚାପ୍ କିଛି ନ ଜାଣିଲା ପରି ପାର୍ ହେବେ ।

ଦଳଦଳ ପକ୍ଷୀ ଆସି ଆକାଶରେ ଉଡିଲେଣି । ଚିଁ ଚାଁ ଶବ୍ଦ କରି ଆକାଶ ଫଟାଇଲେଣି । ହେଲେ ସାହସ କରି ସାପଟା ପାଖକୁ କେହି ଆସୁ ନାହାନ୍ତି । ମା ଚଢ଼େଇର ଆଖିରେ ଲୁହର ନଦୀ ବହି ଯାଉଛି ।

ହାତଯୋଡି ସାପଟାକୁ କେତେ କାକୁତି ମିନତି କରି ସାରିଲାଣି । ତା' ପିଲା ମାନଙ୍କୁ ଖାଇଲେ ଅଧର୍ମ ହେବ । ଭଗବାନ ସହିବେନି । ହେଲେ କଣ ହେବ ? ସାପଟା କାହାରି କଥା ଶୁଣିବାକୁ ରାଜି ନୁହେଁ । ପେଟରେ ତା'ର ନିଆଁ ଜଳୁଛି । ଏଡେ ବଡ ଦୁନିଆଟା ସତେ ଯେମିତି ତା' ଗର୍ଭରେ ମୁହୂର୍ତ୍ତକ ମଧ୍ୟରେ ନିଶ୍ଚିହ୍ନ ହୋଇଯିବ । କ୍ଷୁଧାରେ ସେ ଅଧୀର, ବ୍ୟତିବ୍ୟସ୍ତ ।

କାହାକଥାରୁ ସେ କଣ ପାଇବ ? ତା'ର ଏ ବିରାଟ ଲମ୍ବା ପେଟଟା ବୟାଚଢ଼େଇର ପିଲା ମାନଙ୍କୁ ନ ଖାଇଲେ ପୂରିବ କିପରି ? ଏମାନଙ୍କୁ ଛାଡି ଦେଲେ ତାକୁ ଆହାର ଦେବ କିଏ ?

ତାଳ ବରଡା ଉପରୁ ଟପ୍ ଟପ୍ ପାଣି ପଡୁଛି । ତଳେ ପୋଖରୀ କୂଳରେ ବେଙ୍ଗ ରଡି । ଏଇଟା ଯେମିତି ବର୍ଷାଦିନର ପୁରୁଣା ନାଟକ ଉତ୍ସବ । ବେଙ୍ଗରଡି ସାଙ୍ଗକୁ ଝିଙ୍କାରୀର ଝିନ୍ ଝିନ୍ ଶବ୍ଦ ଭିତରେ ସତେ ଯେମିତି ପ୍ରତିଯୋଗିତା ଚାଲିଛି ।

ଅମାବାସ୍ୟାର କାଳ ରାତି, ଅନ୍ଧକାରର ଛାଇ ସାରା ପୃଥିବୀକୁ ମାଡ଼ି ଆସିଲାଣି ।

ମାଳିନୀ ଝରକା ପାଖରେ ବସିଛି । ବାୟାଚଢ଼େଇ ବସା ଭିତରୁ ସାପଟା ମୁଣ୍ଡ ଟେକିବାର ଦେଖୁଛି । ଏକ ଲୟରେ ଚାହିଁ ରହିଛି ସେଇ ଆଡ଼କୁ ! କଳା ମଚ୍ ମଚ୍ ଭୟଙ୍କର ନାଗ ସାପଟା !!

ସତରେ, ଏଭଳି ଜୀବମାନେ କେଡ଼େ ଅଦ୍ଭୁତ ନୁହନ୍ତି ??? ଆପଣା ସ୍ୱାର୍ଥ ପାଇଁ ଏମାନେ ସର୍ବଦା ଅନ୍ଧ । ନିଜ ଭୁଲକୁ ମୋଟ ଉପରେ ଦେଖି ପାରନ୍ତି ନାହିଁ । କିନ୍ତୁ ଅନ୍ୟମାନଙ୍କ ଭୁଲ ଦେଖିବାରେ ସେମାନେ ଧୁରନ୍ଧର, ସିଦ୍ଧହସ୍ତ ।

ଏ ସୃଷ୍ଟି ବାସ୍ତବରେ ବଡ଼ ବିଚିତ୍ର । ଏଭଳି ସୃଷ୍ଟିକଲା ବେଳେ ଭଗବାନ କଣ ଭାବିନଥିଲେ ? ସାପ, ବେଙ୍ଗ, କୀଟ ପତଙ୍ଗଙ୍କ ସୃଷ୍ଟିକୁ ଅଦ୍ଭୁତ କୁହା ନଯାଇ ଆଉ କଣ ବା କୁହାଯିବ ?

ସାପ ଖାଇବ ବୋଲି କଣ ବେଙ୍ଗର ଜନ୍ମ ? ଦୀପର ଅଗ୍ନିଶିଖାରେ ଝାସ ଦେବାପାଇଁ କଣ ପତଙ୍ଗର ସୃଷ୍ଟି ? ଏମିତି ଅନେକ ପ୍ରଶ୍ନ ନିଜକୁ ପଚାରି ଚାଲିଛି ମାଳିନୀ - ହେଲେ ଉତ୍ତର ପାଇନି । ମନ ତା'ର ଭାରାକ୍ରାନ୍ତ ହୋଇ ଉଠିଛି । ହୃଦୟ ତା'ର ଜଳି ପୋଡ଼ି ପାଉଁଶ ହୋଇଛି ।

ସେ ମନେ ମନେ ଭାବି ଚାଲିଛି - କୋଇଲୀ ସୁନ୍ଦର ଗୀତ ଗାଏ ବୋଲି ତାର ଗର୍ବ । ଘାତକ ହତ୍ୟା କରିବାରେ ନିଜର କାର୍ଯ୍ୟ ଦକ୍ଷତା ପାଇଁ ଗର୍ବିତ । ଅନ୍ୟ ପକ୍ଷରେ ମୃତ୍ୟୁର ସନ୍ନିକଟ ହେଉଥିବା ଜୀବଟି ଭୟରେ ଆତୁର, ଦୁଃଖରେ ମର୍ମାହତ ।

ସେଇ ଦୁଃଖ ଓ ଭୟକୁ ନେଇ ବାୟାଚଢ଼େଇର ପରିବାର ଆଜି ଭୟାତୁର ଓ କାକୁସ୍ତ । ସାପର ଭୟଙ୍କର ଆକ୍ରମଣରେ ଥରହର ।

ବାୟାଚଢ଼େଇ ମା ଆଖିରେ ବହି ଯାଉଛି ନଦୀର ଧାର - ଛାତିରେ ଜଳୁଛି ଅଗ୍ନିର ଲେଲିହାନ ଶିଖା । ଏ ଅନ୍ୟାୟୀ ସାପ ଆଗରେ ଚିର ଦୁଃଖିନୀ ମା ଚଢ଼େଇର ସବୁ ଚେଷ୍ଟା ବିଫଳ ହୋଇଛି, ସେ ପ୍ରତିଶୋଧ ନେଇ ପାରିନି ସାପର । ସେ ଅସହାୟା, ଦୁର୍ବଳା । ବରଂ ହାରି ଯାଇଛି । ସେ କେବଳ ନୁହେଁ, କେହି ତା'ର କିଛି କ୍ଷତି କରି ପାରିନାହାନ୍ତି ।

ତା ଛୁଆ ମାନଙ୍କର ବିକଳ କାନ୍ଦଣା ଧିରେ ଧିରେ ଅସ୍ପଷ୍ଟ ହୋଇ ଆସିଲାଣି । ମା ଚଢ଼େଇର ଆଖିରୁ ନିଆଁର ଝୁଲ ଖସି ପଡୁଛି । ବୁକୁଫଟା କରୁଣ ନିବେଦନ ନେଇ ସେ ସାପ ସମ୍ମୁଖରେ ମିନତି ବାଢ଼ିଛି ବାରମ୍ବାର ।

ମାଳିନୀ ଆଖିରୁ ଥପ୍ ଥପ୍ ହୋଇ ଲୁହ ଟୋପାମାନ୍ ଖସି ପଡିଲା । ମନେ ମନେ ବ୍ୟତିବ୍ୟସ୍ତ ହୋଇ ପଡିଲାସିଏ । ସତରେ ସାପଟାର କେହି କିଛି କରିପାରିଲେନି । ନିରୀହ ମାନେ କଣ ନିରୁପାୟ ହୋଇ ଏମିତି ହାରିଯିବେ ଏ ଦୁନିଆରେ ?

ବାୟାଚଢ଼େଇର ଅନ୍ତରାତ୍ମା କାନ୍ଦୁଥିବ । କେତେକଷ୍ଟ କରି ସିଏ ଗଢ଼ିନଥିଲା ତା'ର ଏଇ ଛୋଟିଆ ବସା ଘରଟି ! କେତେ କଷ୍ଟରେ ବୁଲି ବୁଲି ତା' ଛୋଟିଆ ଥଣ୍ଟିରେ କୁଟା କାଠି ବୋହି ନ ଥିଲା ସିଏ ଏଠୁ ସେଠୁ ? କେତେ ଦୁଃଖ କଷ୍ଟର ଝଡ଼ଝଞ୍ଜା ଭିତରେ ସେ ବଂଚେଇ ରଖି ନଥିଲା ତା'ର କୁନି କୁନି ପିଲାମାନଙ୍କୁ ?

ସେ ଅନେକ ସ୍ୱପ୍ନ ଦେଖିଥିଲା ତାର ଏଇ ଟିକି ସଂସାରଟି ପାଇଁ । କିନ୍ତୁ ଆଜି କଣ ହେଲା ? ସବୁ ଆଶା ସବୁ ସ୍ୱପ୍ନଭାଙ୍ଗି ଚୁରମାର ହୋଇଗଲା । ଏକ ପ୍ରଳୟଙ୍କରୀ ବନ୍ୟାର ସ୍ରୋତରେ ସତେଅବା ଭାସି ଗଲା କାହିଁ କେତେଦୂର ।

ମା ଚଢ଼େଇଟା ପାଣି ଭଉଁରୀ ପରି ଘୁରିବୁଲୁଛି । ବାପାର ଚିନ୍ତା ନାହିଁ । ପୁଣି ବସାଘରଟେ କରିବା ପାଇଁ ସେ ଏଣୁ ତେଣୁ କାଠିକୁଟା ଆଣି ଗଦେଇଲାଣି । ବାପା ଚଢ଼େଇଟା ମା ଚଢ଼େଇକୁ ସାନ୍ତ୍ୱନା ଦେଇ କହୁଛି - ଏମିତି କାନ୍ଦୁଛୁ କାହିଁକି ? ଆମର କଣ ଆଉ ପିଲା ହେବେନି ?

ମା ଚଢ଼େଇର ମନ ବୁଝୁନି । ତାର ସେଇ ଗୋଟାଏ କଥା । ଆଉ ସେ ବସା ବାନ୍ଧିବନି । ଆଉଥରେ ଯଦି ବିଷାକ୍ତ ସାପଟା ତା'ପିଲାମାନଙ୍କୁ ଖାଇଦେବ ? ସେ କଣ କରିବ ? ସାପଟାକୁ ତ ଭୟରେ କେହି କିଛି କହିବେନି । ନିଜ ସ୍ୱାର୍ଥପାଇଁ ଚୁପ୍‌ରହିବେ ସମସ୍ତେ ।

ମାଆ ବାୟି ଚଢ଼େଇର ମନେ ଅଛି ସେଦିନ କଥା, ଯେଉଁଦିନ ସାପ ତା' ବସା ଘରଟାକୁ ଆସି ପୂର୍ବରୁ ଠାବ କରୁଥିଲା । ଏବେ ଗଛଉପରକୁ ଚଢ଼ି ଏତେବଡ କାଣ୍ଡକରି ଚାଲିଗଲା ।

ଏଇ ଅନ୍ୟାୟ ଅନୀତିର କଣ କିଛି ବିଚାର ନାହିଁ ?, କିଛି ଶାସ୍ତି ନାହିଁ ? ନିରୀହ କଣ ଯୁଗେଯୁଗେ ଦଳିତ, ପ୍ରତାରିତ ଓ ନିଷ୍ପେଶିତ ହୋଇ ରହିଥିବ ? ତା' କଥାର କିଛି ବିଚାର ହେବନି ?

ମା ଚଢ଼େଇର ମନ ବୁଝୁନାହିଁ । ସେ ଖୋଜୁଛି ନ୍ୟାୟ । କାହିଁକି ଏମିତି ଜବରଦସ୍ତ ସାପ ତା' ପିଲା ମାନଙ୍କୁ ଖାଇ ଦେଲା ? ତା' ସୁନ୍ଦର ସଂସାରରେ ନିଆଁ ଜାଳିଦେଲା କାହିଁକି ? କି ଅଧିକାର ନେଇ ?

ମାଳିନୀ ଝରକା ପାଖରେ ବସି ମା ଚଢ଼େଇର ବୁକୁଫଟା ଚିଚିରା ରାବ ଶୁଣି ମନେ ମନେ ଭାବୁଛି- ଘୋର ଅଂଧକାର ଭିତରେ ଏକ କ୍ଷୀଣ ଆଲୋକର ରେଖା ସ୍ପଷ୍ଟ ଦେଖା ଗଲାଣି । ଅତିଶୀଘ୍ର କଳିଯୁଗ ଶେଷ ହୋଇ ସତ୍ୟଯୁଗ ପୃଥିବୀ ପୃଷ୍ଠକୁ ଅବତରଣ କରିବ ଏଥିରେ ସନ୍ଦେହନାହିଁ ।

ଅଧର୍ମ ଓ ଅନ୍ୟାୟ ଲଜ୍ଜାରେ ମୁହଁ ପୋତି ନିଶ୍ଚିତ ଭାବରେ ଦୂରକୁ ପଳାୟନ କରିବେ । ଯେଉଁମାନେ ଅଧର୍ମୀ ଓ ଅନ୍ୟାୟୀ ଭଗବାନଙ୍କ ଦରବାରରେ ସେମାନଙ୍କର ବିଚାର ହେବ ।

ଏବେବି ମାଳିନୀ କାନଡ଼େରି ଶୁଣୁଛି, ମା ଚଢ଼େଇର ବିକଳ କାନ୍ଦଣା । ଟିକି ଥଣ୍ଟି ମେଲାଇ ସେ ବସା ଚାରିପାଖେ ଘୁରି ଘୁରି କାନ୍ଦୁଛି । ଆଖିରୁ ତାର ତତଲା ଲୁହ ଗଡ଼ି ପଡୁଛି ଧାର ଧାର ହୋଇ ।

୦●୦

# ଝିଅଟିର ରଙ୍ଗ କଳା

ଚିଠିଟି ପଢ଼ି ଥକ୍କାମାରି ବସିପଡ଼ିଲା ନିତା । ଚାରିଆଡ଼ ତାକୁ ଅଂଧାର ଦିଶିଲା । ଏମିତି ଖଣ୍ଡେ ନୁହେଁ, ଅନେକ ଚିଠି ପାଇଛି ସିଏ । ପୁଣି ଯୋଗକୁ ପୋଷ୍ଟ ମ୍ୟାନ୍ ସବୁଗୁଡ଼ା ତା'ରି ହାତରେ ଦେଇଯାଏ ।

କେତେ ଆଶାରେ ସେ ଚିଠି ଖୋଲେ । କିଂତୁ ପଢ଼ି ସାରିବାପରେ ତା'ର ସବୁ ଆଶା ପାଣି ଫାଟିଯାଏ । ମନ ମରିଯାଏ । ସ୍ୱପ୍ନସବୁ ହଠାତ୍ ହାତରୁ ଖସି ପଡ଼ିଥିବା ଦର୍ପଣପରି ଚୁନ୍‌ଚୁନା ହୋଇଯାଆନ୍ତି ।

ସମସ୍ତେ କହନ୍ତି ନିତା ଭାରି ସୁନ୍ଦରୀ । ଉତ୍କୃଷ୍ଟ ଶିଳ୍ପୀର ହାତ ତିଆରି ପଥର ମୂର୍ତ୍ତିପରି । ଅନେକ କହନ୍ତି ନିତାର ମୁହଁଟି ଅଜନ୍ତାର ନାରୀମୂର୍ତ୍ତି ଠାରୁ ବି ଆହୁରି ସୁନ୍ଦର । ନିତାର ମନେ ଅଛି କଲେଜ୍ ସାଙ୍ଗ ରଞ୍ଜିତା କଥା । ଦେଖିବାକୁ ତ ମୋଟେ ସୁନ୍ଦର ନୁହଁ କିଂତୁ ପିଚ୍ ପିଚ୍ ଗୋରା । ନୀଳ ରଙ୍ଗର ଶାଢ଼ୀ ତାକୁ ଭାରି ମାନେ ବୋଲି ବାସନ୍ତି, ସ୍ୱପ୍ନା, ରେଣୁକା-ସମସ୍ତେ କହନ୍ତି । ସେ ସେତେବେଳେ କଲେଜ୍ କୁଇନ୍ । କେମିତି କେଜାଣି ? ନାକଟା ଏତେ ଚେପ୍‌ଟା ଯେ ଚାହିଁ ହୁଏନା । ତଥାପି ଗୋରାବୋଲି ନିଜକୁ ଭାରି ସୁନ୍ଦରୀ ଭାବେ, ମନେ ମନେ ଭାରି ଗର୍ବ ତାର ।

ଏକଥା ବି ସତ, ହେମାଙ୍ଗୀ, ଅନିତା, ବିଜୟା-ସମସ୍ତଙ୍କ ବାହାଘର ଭାଙ୍ଗିଛି ସେହି ରଙ୍ଗ ପାଇଁ । ଅନେକ କହନ୍ତି ଝିଅଦେଖାବେଳେ ରଙ୍ଗପାଇଁ ଷାଠିଏ ନମ୍ବର । ବାକି ଚାଳିଶି, ଝିଅର ଅନ୍ୟାନ୍ୟ ଦିଗ-ବ୍ୟବହାର, ଚାଲିଚଳନ, ପାଠ ଇତ୍ୟାଦି ।

ବାପା ମା ଯେତେ ଜାନି ଯୌତୁକ ଦେଲେ ମଧ୍ୟ ଝିଅର ରଙ୍ଗ ନଥିଲେ ସବୁ ବେକାର । ଏକଥା କିଏ କହୁ ନକହୁ ନିତା ଅଙ୍ଗେ ଲିଭାଇଛି । ତା' ବାପା ପୋଲିସ୍ ଅଫିସର୍ । ତାଙ୍କର କଣ ନାହିଁ ? ଝିଅକୁ ସେ କଣ ବା ନ ଦେବେ ? କିଂତୁ ବର ଖୋଜି ଖୋଜି ତାଙ୍କ ପରିବାର ଅସ୍ତବ୍ୟସ୍ତ ହୋଇ ପଡ଼ିଲେଣି । ଧୀରେ ଧୀରେ ସମସ୍ତଙ୍କର ଧୈର୍ଯ୍ୟ ତୁଟିଲାଣି ।

ଶେଷକୁ ନିତାର ଉପର ବ୍ୟାଚ୍‌ରେ ପଢୁଥିବା ରବିନ୍ ଯେଉଁଦିନ ଚାକିରୀ ପାଇଲା, ସେହି ଦିନ ହିଁ ନିତା ବାପା ତାଙ୍କ ଘରକୁ ପ୍ରସ୍ତାବ ପଠାଇଥିଲେ । ନିତା ମଧ୍ୟ ମନେ ମନେ ଖୁବ୍ ଆଶା କରିଥିଲା । କାରଣ ରବିନ୍ ବେଳେ ବେଳେ ତା' ସହିତ କଲେଜ୍ ବାହାରେ କଥାବାର୍ତ୍ତା ହେଉଥିଲା । ଖାଲି କଥାବାର୍ତ୍ତା ନୁହେଁ, ସେହି କେତେପଦ କଥାବାର୍ତ୍ତା ଭିତରେ ଭଲ ପାଇବାର ବାସ୍ନା ବି ସେ ବାରିଛି କେତେଥର ।

ରବିନ୍ ଯେ ଏ ପ୍ରସ୍ତାବରେ ରାଜି ହେବନି ସେକଥା ନିତା ବିଶ୍ୱାସ କରିନଥିଲା । କିଂତୁ ଯେଉଁଦିନ ମଧ୍ୟସ୍ଥି ଫେରିଆସି କହିଲେ ଯେ "ତାଙ୍କର ଗୋରାଝିଅ ଦରକାର" ସେଦିନ ନିତା ତା' ମନର ଭ୍ରାନ୍ତ ଧାରଣାକୁ ଦୂରେଇ ଦେବାକୁ ବାଧ୍ୟ ହୋଇଥିଲା ।

ଆଉଗୋଟିଏ ଘଟଣା ନିତା ମନରୁ ଏବେବି ଭୁଲିନି । ସେଦିନ କାର୍ତ୍ତିକ ପୂର୍ଣ୍ଣମୀ, ଦିନ ଠିକ ଦଶଟା । ହଠାତ୍ ଗୋଟାଏ ଆମ୍ବାସାଡାରକାର୍ ଆସି ତାଙ୍କ ଘର ସମ୍ନାରେ ଠିଆହେଲା । ନିତା ମା କବାଟ ଫାଙ୍କରେ ଦେଖି ଜାଣିଗଲେ । କହିଲେ - "ଏଇଟାପରା ସେହି କଟକ ବାଲାଙ୍କ ଗାଡି" ।

ଗାଡିରୁ ଭେନିଟ୍ ବ୍ୟାଗ୍‌ଧରି ଓହ୍ଲାଇ ପଡିଲେ ଜଣେ ଅତ୍ୟାଧୁନିକା ମହିଳା । ମୁହଁରେ ବହଳିଆ ପାଉଡର ଲେପ ସାଙ୍ଗକୁ ଓଠରେ ମୋଟାଏ କଫି ରଙ୍ଗର ଲିପ୍‌ଷ୍ଟିକ୍ । ପୁଣି ଓଠ ଉପରେ ଓଦାଳିଆ ଚିକ୍ ଚିକ୍ କରୁଥିବା ଲିପ୍‌ଲସ୍ । ଓଠଟା ସତେ ଯେମିତି ପାଣିରେ ଭାସୁଛି । ଯେଉଁ ପୁଅଟି ସେ ସ୍ତ୍ରୀ ଲୋକ ସଙ୍ଗରେ ଆସିଥିଲା, ସେ ହୁଏତ ବର ହୋଇପାରେ । କିଂତୁ ଖୁବ୍ ସୁନ୍ଦର । ଖୁବ୍ ଗୋରା ରସିୟାନ୍ ମାନଙ୍କ ପରି ।

ନିତା ଛାତିରୁ ନିଆଁ ଖସିଗଲା । ଦେହ ଭିତର ଥରୁଥାଏ । ନିତାର ମା ବାପା ଗାଡି ପାଖକୁ ଯାଇ ସେମାନଙ୍କୁ ପାଛୋଟି ଆଣିଲେ । ସେହି ଅତ୍ୟାଧୁନିକ ମହିଳାଙ୍କ ସଙ୍ଗେ ତାଙ୍କର ପାଞ୍ଚଜଣ ବାନ୍ଧବୀ ମଧ୍ୟ ଆସିଥାନ୍ତି ।

ସମ୍ମାନର ସହ ଅତିଥି ଚର୍ଚ୍ଚା ସରିଲା । କୋଲ୍‌ଡ ଡ୍ରିଙ୍କ୍‌ଠାରୁ କଫି ଯାଏ । ତା ପରେ ଜଳଖିଆରୁ ପାନ ମସଲାଯାଏ । ନିତାର ମନଟା କେଜାଣି କାହିଁକି କେମିତି କେମିତି ଲାଗୁଥିଲା । ସେ ଜାଣିଥିଲା, ଏମାନେ କେବେବି ରାଜି ହେବେ ନାହିଁ । ତାହାହିଁ ହେଲା । ସେମାନେ ଝିଅଦେଖା ପରେ ଅତି ଭଦ୍ରତାର ସହ ଚିଠି ଖଣ୍ଡିଏ ପଠାଇଲେ । ଚିଠିର ବିଷୟ

ବସ୍ତୁଥିଲା ସେମାନେ ଏବର୍ଷ ବାହାଘର କରୁନାହାନ୍ତି । କିଛି ଦିନପରେ ମଧ୍ୟସ୍ଥିଙ୍କ ଠାରୁ ଜଣା ପଡିଲା ଯେ, ସେମାନେ କେବଳ ଗୋରାଝିଅ ଚାହୁଁଥିଲେ ।

ସବୁ ଶୁଣି ନିତାର ବାପା ମା ଭାଗ୍ୟକୁ ଦୋଷ ଦେଲେ । ତା' ଛଡା ଆଉ କଣ ବା ଉପାୟ ଅଛି ?

ଏଇଗତ ଦୁଇମାସ ତଳର କଥା । ଏତେ ଶୀଘ୍ର ନିତା ଭୁଲିଯିବ ବା କେମିତି ? ବର ପକ୍ଷରୁ ଥର ଥର ହୋଇ ଦଶଥରରେ ପ୍ରାୟ ତିରିଶି ଜଣ ଆସି କନ୍ୟା ଦେଖିଲେ ଏବଂ ସମସ୍ତଙ୍କର ନିତା ପସନ୍ଦ ମଧ୍ୟ ହେଲା । କିଂତୁ ଝିଅ ଦେଖା ପରେ ସେମାନେ କିଛି ଖବର ଦେଲେନାହିଁ ।

ନିତାର ଅନ୍ତରଙ୍ଗ ବଂଧୁ ରଶ୍ମିତା ଠାରୁ ନିତା ଖବର ପାଇଲା ଯେ ସେ ପୁଅ କୁଆଡେ କଳାଝିଅ ମାନଙ୍କୁ ମୋଟେ ପସନ୍ଦ କରେ ନାହିଁ । ସେମାନଙ୍କ ବାଟକୁ ଚାହିଁ ଚାହିଁ ନିତା ମାଙ୍କ ଆଖିରୁ ପାଣି ମଲାଣି । ନିତା ମଧ୍ୟ ସାହସ କରି ମାକୁ ରଶ୍ମିତା ଠାରୁ ଶୁଣିଥିବା କଥା କହି ପାରୁନଥିଲା ।

ପୁରୀ ପ୍ରସ୍ତାବ କଥାବି ନିତାର ମନେପଡେ । ଆଜିପର୍ଯ୍ୟନ୍ତ ସେକଥା ଭୁଲିପାରିନି ସିଏ । ପୁଅଟି ନିଜେ ନିତାକୁ ଦେଖିବାକୁ ଆସିଥିଲା । ନିତା ବାପା ଯେତେବେଳେ ପୁଅଟିକୁ ପଚାରିଲେ-"ତୁମ ବାପା ମା କେବେ-ଆସିବେ"? ସେତେବେଳେ ପୁଅ ଡାହାଣହାତର ବିଷି ଆଙ୍ଗୁଠି ଟିପରେ ଓଠକୁ ଟିକିଏ ଚିପି ସିଧା ସିଧା କହିଲା - ଆଉ କାହିଁକି ଆସିବେ ? ବାପା, ମା, ଭାଇ ଭଉଣୀ ସମସ୍ତେ ଆମଘରେ, ଗୋରାରଙ୍ଗକୁ ପସନ୍ଦ କରନ୍ତି ।

ନିତାବାପା ପୁଅଟିକୁ ଗେଟ୍ ପର୍ଯ୍ୟନ୍ତ ଯାଇ ବାଟେଇ ଦେଇ ଆସିଲେ । ସେଦିନ ଅନ୍ୟମାନଙ୍କୁ ଲୁହ ଲୁଚେଇବା ପାଇଁ ନିତା ରୋଷେଇଘରକୁ ପଶି ଯାଇଥିଲା । ମନେ ମନେ ଭଗବାନଙ୍କୁ ଅଭିମାନ କରି କହିଥିଲା, "ତମେ ମତେ କଳା କରିଛ ବୋଲି ସେଇଟା କଣ ମୋର ଅପରାଧ ?

ନିତା ତା'ଜୀବନରେ ଅନେକ ପୁଅଙ୍କୁ ଦେଖିଛି । ସେ ପ୍ରାୟ କାହାରି ସଙ୍ଗେ ମିଶେନା । କୌଣସି ବଂଧୁ ବା ବାନ୍ଧବୀ ମାନଙ୍କ ଜନ୍ମୋତ୍ସବରେ ତାକୁ କେହି କେବେ ଦେଖି ନାହାନ୍ତି । ଏଥି ପାଇଁ ଅନେକ ପୁଅ ତାକୁ ପସନ୍ଦ କରିନ୍ତି ନାହିଁ । କିଂତୁ ସେମିତି ଜାଗାକୁ ସେ କାହିଁକି ଯିବ ? କଣ ପାଇବ ସେଠୁ ସିଏ ?

ଯୋଉଠି ପୁଅ ଗୁଡା ଗୋରା ଝିଅଙ୍କ ପଛରେ କୁକୁର ପରି ବୁଲୁଥାନ୍ତି । ଅଥଚ ଝିଅ ମାନଙ୍କ ଠାରୁ ଧୋକ୍କା ଖାଇଲେ ବି ଅପମାନିତ ହୁଅନ୍ତି ନାହିଁ । ସତେ ଅବା ସେଇଟା ସେମାନଙ୍କର ଅଭ୍ୟାସ । ଛି ଛି ପୁଅ ଗୁଡା ଏତେ ବେହିୟା, ମାନ ସମ୍ମାନ କୁ ବି ତାଙ୍କର କଣ ଭୟ ନ ଥାଏ ?

ନିତାଭାବେ ନିରୀହ ଝିଅମାନେ ସବୁବେଳେ ଅସୁବିଧାରେ ପଡନ୍ତି । ନିତାର ରୀତାଞ୍ଜଳି କଥା ମନେପଡେ ସେ ଥିଲା ନିତାର ଅନ୍ତରଙ୍ଗ ବଂଧୁ । ଚାରିବର୍ଷ ହେଲାଣି ତା' ବାହାଘର । ଦୁଇଟି ପୁଅ । ଖୁସିରେ ଅଛି ବୋଲି ସମସ୍ତେ ଜାଣନ୍ତି । କିଂତୁ ସେ ଯେ କିପରି ଦିନକାଟେ ସେକଥା ନିତା ନିଜେ ସବୁ ଜାଣିଛି ।

ଥରେ ସେ ଚିଠି ଖଣ୍ଡିଏ ଲେଖିଥିଲା ନିତାପାଖକୁ । ତା'ସ୍ୱାମୀ ବିଭୁତି ବାବୁ ପ୍ରତି କଥାରେ ତାକୁ କାଳି କାଳି କହି ଯେମିତି ମୁରୁକି ମୁରୁକି ହସନ୍ତି ନା, ରୀତାଞ୍ଜଳିର ଛାତିରେ ଛୁରୀ ପଶିଯାଏ । ଏବେବି ବିଭୁତି ବାବୁ ତାଙ୍କୁ କଲେଜ୍ ଜୀବନର ଗୋରୀ ନନ୍ଦିତାକୁ ଭୁଲି ନାହାନ୍ତି । ସେ କହନ୍ତି-ବାରଲାଇଟ୍ ପରି ନନ୍ଦିତାର ଦେହଟା ଚକ୍ ଚକ୍ ଦିଶେ ।

ରୀତାଞ୍ଜଳି ତାଙ୍କ ବାକ୍ସରେ ଏବେବି ନନ୍ଦିତାର ଖଣ୍ଡେ ଫଟୋ ଥିବାର ଦେଖିଛି । ପ୍ରକୃତରେ ପୁରୁଷଙ୍କୁ ବିଶ୍ୱାସ ନାହିଁ । ଯେତେ ଯାହା ପାଇଲେ ମଧ୍ୟ ଆହୁରି କିଛି ପାଇବା ଆଶାରେ ସେମାନେ ପାଗଳ ହୋଇ ପଡନ୍ତି ।

ନିତା ମନେ ମନେ ଭାବେ ଯଦି ତାକୁ ବିଭୁତି ବାବୁଙ୍କ ପରି ସ୍ୱାମୀ ମିଳିବ ତେବେ ସିଏ କଣ କରିବ ? ରୀତାଞ୍ଜଳିର ସହିବା ଶକ୍ତିକୁ ନିତା ମନେ ମନେ ତାରିଫ୍ କରେ । ସେ ଏସବୁ କେବେବି ବରଦାସ୍ତ କରି ପାରିନଥାନ୍ତା । ସବୁ ଝିଅ ପାରିବେନି ମଧ୍ୟ ।

ଏପରି, ସବୁ କଥା ଚିନ୍ତା କଲାବେଳେ ନିତା ମନେ ମନେ ଭାବେ ବିବାହଟା କଣ ଏକାନ୍ତ ଆବଶ୍ୟକ ? ଅବିବାହିତ ଜୀବନ ଯାପନ କରିବାରେ ପୁରୁଷର ଯଦି କିଛି ଅସୁବିଧା ହେଉନାହିଁ ତେବେ ସ୍ତ୍ରୀର କାହିଁକି ବା ଅସୁବିଧା ହେବ ?

ଏଣୁ ତେଣୁ ଭାବୁ ଭାବୁ ନିତା ଦେଖିଲା ସେଇ ଆସ୍ମାସାତାର ଗାଡିଟା ତାଙ୍କ ଘର ସାମ୍ନାରେ ଆସି ଠିଆ ହେଲା । ପୂର୍ବର ସେହି ଅତ୍ୟାଧୁନିକ ମହିଳା- ଜଣକ ଗାଡିରୁ

ଓହ୍ଲାଇଲେ । ତାଙ୍କ ସଙ୍ଗେ କଳାମିଚ୍ ମିଚ୍ ଚେହେରାର ଏକ ଖୁବ୍ ମୋଟା ଯୁବକ ଓହ୍ଲାଇ, ଦୁହେଁ ହସି ହସି ତାଙ୍କ ଘର ଆଡକୁ ଆସିଲେ ।

ବାପା ମା ଙ୍କ ଖୁସି କହିଲେ ନ ସରେ । ସେହି ଭଳି ପୁଣିଥରେ ଚାଲିଲା ଚୋଇଁଚର୍ଚ୍ଚା । ସ୍ତ୍ରୀ ଲୋକ ଜଣଙ୍କ କହିଲେ ଏ ମୋର ପୁଅ ନୁହେଁ ପୁତୁରା-ଆର୍ମି ଅଫିସର୍ ହୋଇଛି । ତାଙ୍କ କଥାବାର୍ତ୍ତା ରୁ ଜଣା ପଡିଲା ଯେ ସେହି କଳା କଦାକାର ମଣିଷଟି ହେଉଛି ବର ।

ସେମାନେ ଘରଭିତରୁ ନିତାକୁ ଆଣିବାକୁ କହିଲେ । ଘରଭିତରେ ନିତାକୁ ସମସ୍ତେ ସଜାଇବାରେ ବ୍ୟସ୍ତ । ଶେଷକୁ ଦାଣ୍ଡଘରକୁ ନିତା ଆସିଲା । ପାଖ ଖଟ ଉପରେ ବସିଲା, ସ୍ତ୍ରୀ ଲୋକ ଜଣକ ପଚାରିଲେ, କଣ ଝିଅ ତୋର ପସନ୍ଦତ ? ପୁଅର ମୁହଁରେ ଏକ ଉଜ୍ଜଳ ରେଖା ଉକୁଟି ଉଠିଲା । ତା ମୁଖ ଭଙ୍ଗିରୁ ଜଣାଗଲା ତାର ଖୁବ୍ ପସନ୍ଦ ।

ନିତା ପୁଅ ମୁହଁକୁ ଥରେ ମାତ୍ର ଚାହିଁ ତଳକୁ ମୁହଁ କରି ବସିଥାଏ । ମନେ ଭାବୁଥାଏ, ସେ ବୋଧହୁଏ ପ୍ରଥମଥର ପାଇଁ ଏତେ କଳା ପୁଅକୁ ଦେଖିଲା । ମୁଣ୍ଡର ବାଳ ସଙ୍ଗେ ଦେହର ରଙ୍ଗ ପ୍ରାୟ ସମାନ ।

ସ୍ତ୍ରୀ ଲୋକ ଜଣଙ୍କ ନିତାର ପିଠି ଆଉଁସୁ ଆଉଁସୁ ନିତା ବାପାଙ୍କୁ ପଚାରିଲେ ''ନିର୍ବନ୍ଧ କେବେ କରିବେ କହନ୍ତୁ'' ? ମନ ଖୁସିରେ ନିତା ବାପା କିଛି କହିବା ପୂର୍ବରୁ ନିତା କହିଲା- ''ନିର୍ବନ୍ଧ ଆଉ କାହିଁକି କରିବେ ? ଏତେ କଳାରଙ୍ଗର ପୁଅକୁ ମୁଁ ପସନ୍ଦ କରେନା । ଏ ବାହାଘର ହୋଇ ପାରିବନି'' ।

ମହିଳାଙ୍କ ମୁହଁ ଲାଲ୍ ପଡିଗଲା । ସେ ରାଗିଯାଇ କହିଲେ ''ତୁମ ମୁଣ୍ଡ ଖରାପ ହୋଇଯାଇଛି ନା କଣ ? ପୁଅଙ୍କର ସୁନ୍ଦର ଅସୁନ୍ଦର ଗୋରା କଳା କଣ କିଏ ଦେଖେ''?

ନିତା ଦୃଢ଼ କଣ୍ଠରେ କହିଲା ''ଆପଣଙ୍କ ମୁଣ୍ଡ ବୋଧହୁଏ ଖରାପ ହୋଇ ଯାଇଛି । ସେଥିପାଇଁ ଆପଣ ବୁଝି ପାରୁନାହାନ୍ତି ଯେ ଝିଅ ହେଉ ବା ପୁଅ ହେଉ, ପ୍ରତ୍ୟେକର ନିଜର ରୁଚି ଅଛି, ନିଜର ମତା ମତ ଅଛି । ଝିଅ ମାନଙ୍କ କଳା ରଙ୍ଗଟା ଯଦି ବାଛନ୍ଦ ହେଉଛି ତେବେ ପୁଅ ମାନଙ୍କ ରଙ୍ଗ କାହିଁକି ବାଛନ୍ଦ ହେବନି''?

କଳା ପୁଅଟି ଭଲଭାବେ ନିତା ମୁହଁକୁ ଥରେ ଚାହିଁଲା ତା ପରେ ସେଠାରୁ ଉଠି କାର୍ ପାଖକୁ ଚାଲିଗଲା । ନିତା ବାପା ନିତାକୁ ବିରକ୍ତ ହେଲେ କିଂତୁ ନିତା ମା ଅସନ୍ତୋଷ

ହେଲେ ମଧ୍ୟ ନିତାକୁ କିଛି କହିଲେ ନାହିଁ କାରଣ ସେ ଜାଣିଥିଲେ ଅନେକଦିନୁ ନିତାର ମାନସିକ ଅବସ୍ଥା ଭଲ ନାହିଁ ।

ସେଦିନ ଅମାବାସ୍ୟା ରାତି । ଝରକା ପାଖରେ ବସି ନିତା ଆକାଶକୁ ଚାହିଁ ଜହ୍ନ ଖୋଜୁଥିଲା । ଜୀବନର ଅସହ୍ୟ ଯନ୍ତ୍ରଣାର ଲୁହକୁ ଦୁଇ ଓଠ ଫାଙ୍କ ଦେଇ ପିଇ ଯାଉଥିଲା ସିଏ । ଭାବୁଥିଲା, ବିବାହ ନ କରି ରହିବାର ସାହସ ତାର ନାହିଁ, ତା ନୁହେଁ । କିଂତୁ ଏ ସମାଜ କଣ ତାକୁ ଶାନ୍ତିରେ ବଂଚିବାକୁ ଦେବ ? ଯେଉଁ ସମାଜ ଲୁଣ୍ଠନ, ଧର୍ଷଣ ଓ ନରହତ୍ୟାରେ କଳଙ୍କିଂତ ତା'ଠାରୁ କଣ ବା ସେ ଆଶା କରିବ ?

ବଂଚିବାର ସବୁ ସ୍ୱପ୍ନ ଆଜି ଭାଙ୍ଗି ଯାଇଛି ନିତାର । ମନ ତାର ବେଳକୁ ବେଳ ଦୁର୍ବଳ ହୋଇଗଲା । ତକିଆ ତଳୁ ଛୋଟ ପୁଡିଆଟି କାଢ଼ି ସେ ତା' ଶୋଇବା ଘରଟିକୁ ଥରେ ଭଲ କରି ଦେଖିନେଲା । ବାପା ବୋଉଙ୍କର ଫଟୋ ଝୁଲୁଛି କାନ୍ଥରେ । ଆଖି ତାର ଲୁହରେ ଭିଜି ଆସିଲା । କାଗଜ ପୁଡିଆଟି ପାଟିରେ ପକାଉ ପକାଉ ତା ଶରୀର ଶୀଥିଳ ହୋଇଗଲା । ଚର୍ତୁଦ୍ଦିଗ ଘନ ଅଂଧାର ଛାଇଗଲା ସେହି ଅଂଧକାର ଭିତରେ ହଜିଗଲା ଗୋଟିଏ ଅତୃପ୍ତ ମନର କାମନା ବାସନା - ସବୁକିଛି ।

x x x x x

ଆକାଶ ବୁକୁରେ ଦଳଦଳ ହୋଇ ପକ୍ଷୀ ସବୁ ବସାକୁ ଫେରୁଥିଲେ । ସଂଝ ଗଡି ଯାଉଥିଲା । ନିତା ବାପା, ନିତାର ମାଁକୁ କହୁଥିଲେ - ନିତାଯାହା କଲା ଠିକ୍ କଲାନାହିଁ । ବଂଚିବାପାଇଁ ବିବାହଟା ବାସ୍ତବରେ ଏକାନ୍ତ ଆବଶ୍ୟକ ନୁହେଁ । ମଣିଷ ଜୀବନରେ ଅନେକ କର୍ତ୍ତବ୍ୟ ଅଛି । ଏତେ ଛୋଟ କଥାକୁ ନେଇ ଏଭଳି କରି ବସିବା ମୋଟେ ଉଚିତ୍ ହେଲାନି'' । ନିତାର ମା ଆଖିରୁ ଲୁହ ପୋଛୁଥିଲେ ।

୦●୦

# ନିଷ୍ପତ୍ତି

ଅଫିସ୍ ଘର ସାମ୍ନାରେ ଝଙ୍କାଳିଆ ବରଗଛଟାଏ । ବିରାଟ ଶାଖା ପ୍ରଶାଖା ମେଲି ସେ ଠିଆ ହେଇଛି କେଜାଣି କେତେବର୍ଷ ହେଲା । ଗଛଟା ଅଫିସ୍ କୋଠାଘରଟାକୁ ଛାୟିରେ ଘେରେଇ ରଖିଛି । ଖରାଦିନେ ଶୀତଳ ସୁଲ୍ ସୁଲିଆ ପବନରେ ମନ ହଜିଯାଏ ହେଲେ ଶୀତ ଆସିଲେ ଅଫିସ୍ ଘର ଭିତରକୁ ପଶି ହୁଏ ନାହିଁ । ଭିତରଟା ସତେ ଯେମିତି ଗୋଟାଏ ଶୀତଳ ଭଣ୍ଡାର ।

ସେଦିନ ସକାଳ ଦଶଟା । ସବୁଦିନ ପରି ଓଠରେ ବହଳେ ଲିପ୍‌ଷ୍ଟିକ୍ ମାରି, ମହ ମହ ବାସ୍ନାରେ ଅଫିସ୍ ଭିତରକୁ ପଶି ଆସିଲ । ଛନ୍ଦା । ଓଃ.... ଅସହ୍ୟ ଯନ୍ତ୍ରଣା । ତପନ ଏମିତିକା ଉତ୍କଟ ଅତର ଗନ୍ଧକୁ ମୋଟେ ବରଦାସ୍ତ କରି ପାରେନି । ପାଣି ଟ୍ୟାପ୍ ପାଖକୁ ଯାଇ ସେ ମୁହଁ ଧୋଇଲା । ରୁମାଲ୍‌ରେ ପୋଛି ହେଲା କିଂତୁ ସେ ଗଂଧ କିଛିଟା ପରିମାଣରେ ମଧ୍ୟ କମିଲାନି ।

ଛନ୍ଦା ଆଡ଼କୁ ଟିକିଏ ଚାହିଁଲା ତପନ । ଦେଖିଲା ଛନ୍ଦା କଣେଇଁ କଣେଇଁ ତା'ଆଡ଼କୁ ଚାହୁଁଛି । ତପନ ଆଶ୍ଚର୍ଯ୍ୟ ହେଲା । କାହିଁକିନା, ଛନ୍ଦା କାହାରିକୁ ଚାହିଁବା ସେ କେବେ ଦେଖିନି । ମନେ ମନେ ତପନ ଭାବିଲା ଛି, ଛନ୍ଦା ତାକୁ କଣ ଭାବିଥିବ !

ତପନ ଆଖି ଆଗରେ ଗୋଟାଏ ମସ୍ତବଡ଼ କାଳ୍ପନିକ ନିକିତି ହଠାତ୍ ହଲି ହଲି ସ୍ଥିର ହୋଇଗଲା । ବାସ୍ତବିକ୍ ଅନ୍ୟ ଝିଅମାନଙ୍କ ତୁଳନାରେ ଛନ୍ଦା ଖୁବ୍ ଭଲ । ତପନ ପୁଣି ଟିକେ ଛନ୍ଦା ଆଡ଼କୁ ଚାହିଁଲା । ଦେଖିଲା, ଛନ୍ଦା ମୁରୁକି ମୁରୁକି ହସୁଛି । କିନ୍ତୁ କାହିଁକି?

ତପନ ଛାତି ଭିତରେ ଅଣନିଃଶ୍ୱାସର ବେଦନା । ମନରେ ବିଜୁଳିର ଚମକ । ହଠାତ୍ ସ୍ୱାଧୀନ ମନ ପକ୍ଷୀଟାକୁ ସେ ମନର ପିଞ୍ଜରା ଭିତରକୁ ଭିଡିଆଣିଲା । ଶାନ୍ତିରେ ନିଃଶ୍ୱାସ ମାରିଲା ଏଥର ।

ମନେ ମନେ ତପନ ଭାବିଲା-ପ୍ରକୃତରେ ଛନ୍ଦା ଅସୁନ୍ଦର ନୁହେଁ । ମୁହଁ ଓ ଦେହର ଗଢ଼ା ମନ୍ଦ ନୁହେଁ । ମୋଟୀ ନୁହେଁ କି, ଖୁବ୍ ପତଳୀ ନୁହେଁ । ହେଲେ ରଙ୍ଗ କଥା ଭାବିଲା

ବେଳକୁ ତପନ ଆଖିରେ ଅମାବାସ୍ୟାର ଅଂଧକାର ଛାଇଯାଏ । ତଥାପି ଛାତିରେ ଦମେ ନିଃଶ୍ୱାସ ନେଇ ଭଙ୍ଗା ଭଙ୍ଗା ଓଠରେ ସେ ଛନ୍ଦା ଆଡ଼କୁ ଚାହିଁ ଟିକିଏ ହସିଦେଲା । କେଜାଣି କାହିଁକି ତା' ମନଟା କେମିତି ହେଇଗଲା ।

ତପନର ମନେ ଅଛି, ଦିନେ ରମେଶ୍ ବାବୁ ଛନ୍ଦାକୁ କ୍ୟାଣ୍ଟିନ୍‌କୁ ଡାକି ଥିଲେ । କିନ୍ତୁ ମୁହେଁ ମୁହେଁ ଛନ୍ଦା ମନା କରି ଦେଇଥିଲା ତାଙ୍କୁ । ସେଦିନ ତା' ମୁହଁ ଦେଖି ତପନ ଅନୁଭବ କରିଥିଲା- ଏଇ ସାମାନ୍ୟ କଥାଟାରେ ଛନ୍ଦା ଲାଜରେ ଲାଲ୍ ପଡ଼ିଯାଇଥିଲା । ଭାରି ଲାଜକୁଳି ସିଏ । ଭାରି ଭଲ ଚରିତ୍ରର ଝିଅଟିଏ ।

ଛନ୍ଦା ବାପା ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । କଳା ହେଲେବି ଝିଅଟାର ଶିକ୍ଷା ସଭ୍ୟତା ଓ ସଂସ୍କୃତି ଅଛି । ତା' ଚରିତ୍ରକୁ ମାନିବାକୁ ପଡ଼ିବ । କାହା ସଂଗେ ହସ ଖୁସିରେ ପଦେ କଥା ହେବା ସିନା କେହି ଦେଖିନି, କିନ୍ତୁ ଫେସନର ସୀମାକୁ ସେ ଅତିକ୍ରମ କରିଛି- ଏକଥା ସମସ୍ତେ ଜାଣନ୍ତି ।

ଗୋଟିଏ କଥାରେ ତପନ ଆଶ୍ଚର୍ଯ୍ୟ ହୁଏ । ନିଜକୁ ଏତେ ସୁନ୍ଦର ଭାବରେ ସଜାଇବା କାରଣ କ'ଣ ହୋଇପାରେ ?

ବିଚରା ଅଫିସ୍ ପିଅନଟା କେତେବେଳୁ କେଜାଣି ତପନ ଟେବୁଲ୍ ପାଖରେ ଠିଆ ହୋଇଛି । ଅନ୍ୟ ମନସ୍କ ଭାବରେ ତା'ହାତରୁ ଫାଇଲ୍‌ଟା ଛଡାଇ ନେଇ ତପନ କହିଲା- ''ଗଲୁ ରାମୁ, କପେ ଚା' ଆଣିଲୁ ।'' କଥା ନସରୁଣୁ ହଠାତ୍ ତପନ ପିଠିକୁ ନିର୍ଘାତିଆ ଚାପୁଡାଏ ମାରି ମୀନା କହିଲା- କ'ଣ ଏମିତି ଏକାଏକା ଚାହା ପିଇବେ ?'' ଚମକି ପଡ଼ି ତପନ କହିଲା- ହଁ ହଁ ମୀନା ଦେଇଙ୍କ ପାଇଁ ଆଉ କପେ..... ରାମୁ ଚାଲିଗଲା ।

ତପନ ମନେ ମନେ ଭାବୁଥିଲା- ଝିଅ ଜାତିଙ୍କର କଳଙ୍କ ହେଉଛି ମୀନା, ଆରେ କଥାତ କହିବୁ, ପିଠିରେ ଚାପୁଡ଼ା ମାରିବା କଣ ଦରକାର । ଗୋଟାଏ ନିହାତି ଖରାପ ଅଭ୍ୟାସ । ଟିକିଏ ସୁନ୍ଦରୀ, ପତଳୀ ଆଉ ଗୋରୀ ବୋଲି ମନେ ମନେ ହିରୋଇନ୍ । ଭାରି ଉଦ୍ଧତ । ଏମିତି ଝିଅଗୁଡ଼ା ଠିକିଲେ ଶିଖନ୍ତି ।

ଛନ୍ଦା ଧିରେ ଧିରେ ସେଠୁ ଉଠି, ବାରଣ୍ଡାକୁ ଚାଲିଗଲା । ପାଖ ରୁମ୍ ଭିତରେ ପଶୁ ପଶୁ ଦେଖିଲା, ସ୍ୱପ୍ନା ଗାଲରେ ହାତ ଦେଇ କ'ଣ ବସି ଭାବୁଛି ।

ଛନ୍ଦାର ଦେହଟା ଛନ୍କିଗଲା । ଏମିତି ବସି ଭାବିବାଟା ସ୍ୱପ୍ନା ପାଇଁ ନୂଆ କଥା ନୁହେଁ । ଏଇତ, ଗତ ପନ୍ଦର ଦିନ ହେଲା ଏଇ ସେକ୍ସନ୍‌କୁ ତା'ର ବଦଳି ହୋଇଛି । ସେ ରୁମ୍‌ରେ ତପନ ପାଖ ସିଟ୍‌ରେ ବସି ସବୁବେଳେ ତାକୁ ଚାହୁଁଥାଏ ।

ବାଳମୁକୁନ୍ଦ ବାବୁ ଏକଥା ଅନୁମାନ କରି ଅଫିସରଙ୍କ କାନରେ ଥରେ ଫୋଡ଼ିଦେଲେ । ହେଲେ କ'ଣ ହେବ ? ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ । ସେଠି ଯୋଉ କଥା, ଏଠି ସେଇ କଥା । ଏବେ ଜିତେନ୍ଦ୍ର ବାବୁଙ୍କ ପାଖରେ ବସି ତାକୁ କଣେଇଁ କଣେଇଁ ଚାହେଁ ବୋଲି ଲୋକେ କହିଲେଣି ।

ସ୍ୱପ୍ନା ଦାନ୍ତ ଦେଖେଇ ସବୁବେଳେ ସମସ୍ତଙ୍କ ପାଖରେ ହସୁଥିବ । ସେ ହସରେ କି ମନ୍ତ୍ରଥାଏ କେଜାଣି ଅଫିସରଙ୍କଠୁ କିରାଣୀ ଯାଏ ଯେତେ ଅଛନ୍ତି ସମସ୍ତେ ବୋକା ପାଲଟି ଯାଆନ୍ତି । ଆଁ ଟା କରି ତାକୁ ଅନେଇଥାନ୍ତି ।

ତପନ ବାପା ଥରେ ଅଫିସ୍‌କୁ ଆସିଥିଲେ । ସ୍ୱପ୍ନାକୁ ଦେଖି ବୁଢ଼ାର ମନ୍‌ଖୁସ୍ । ତପନକୁ କହିଲେ- ଓଃ ଭାରି ସୁନ୍ଦର, ଗୋରା ତକ୍‌ତକ୍ ଝିଅଟା, ଆ'କୁ ବୋହୂ କଲେ କେମିତି ହୁଅନ୍ତା ? ତପନ ଗୁହ ଖାଇଲାପରି ମୁହଁଟା କଲା । ତା'ବାପା ଚୁପ୍ ରହିଲେ- କହିଲେ, ତୋ ଇଚ୍ଛା, ତୁ ସଂସାର କରିବୁ । ମୋର କିଛି କହିବାର ନାହିଁ । ନିଜେ ନିଜର ଭବିଷ୍ୟତ ଚିନ୍ତା କରି ପାରିଲେ ଖୁବ୍‌ଭଲ ।

ବାପା ଗାଁକୁ ଫେରିଗଲେ । ଅନେକ ଦିନ ଗଡ଼ିଗଲା । ତପନର ବାହାଘର କଥା ସେ ତାକୁ ଆଉ ପଚାରିନାହାନ୍ତି ।

ଏମିତି ଭାବୁ ଭାବୁ ଛନ୍ଦା ଅଫିସ୍ ବାରଣ୍ଡାରୁ ତା' ନିଜ ରୁମ୍‌କୁ ଫେରି ଆସିଲା । ହଠାତ୍ ବାଳମୁକୁନ୍ଦ ବାବୁ ଭିତରକୁ ପଶିଆସି ମୀନା ଓ ତପନ ଚା' ପିଉଛନ୍ତି ଦେଖି କହିଲେ- ''ମିଷ୍ଟର ତପନ ! ତୁମର ଏଇ କଥାତ ଗଲାନି ଦେଖୁଛି । ଯେତେବେଳେ ଦେଖ ଚା' କପ୍‌ଟା ମୁହଁରେ ମେଣ୍ଟେଇଛ । ଦିନରାତି ଚା' ତେଣ୍ଟୁଥା । ଏ ଫାଇଲ୍ ପତ୍ର କାମ କିଏ କରିବ ?''

ବାଳମୁକୁନ୍ଦ ବାବୁ ମୀନା ଆଡ଼କୁ ଟିକିଏ ଅନେଇଲେ । ପଛରୁ ବାଳ !, ବାଳ ! ଡାକି ଉପରସ୍ଥ ଅଫିସର୍ ରୁମ୍ ଭିତରକୁ ପଶିଆସିଲେ । ବାଳମୁକୁନ୍ଦ ବାବୁଙ୍କ ମୁହଁଟା ଟିକିଏ ଶୁଖିଗଲା । କାରଣ ସେତେବେଳକୁ ସମସ୍ତେ ପ୍ରାୟ ମୁରୁକି ମୁରୁକି ହସିବାକୁ ଆରମ୍ଭ କରିଦେଲେଣି ।

ବାଳମୁକୁନ୍ଦ ବାବୁଙ୍କ ନାଁଟାକୁ ନେଇ ଅଫିସ୍‌ରେ ବେଳେବେଳେ ଯୁବକ ଯୁବତୀମାନଙ୍କ ଭିତରେ ଖୁବ୍ ଥଟ୍ଟା ତାମ୍‌ସା ଚାଲେ । ଏକଥା ଯେ ତାଙ୍କ କାନକୁ ନଆସିଛି, ତା' ନୁହେଁ । ସେ ଦାନ୍ତ କଡ଼ ମଡ଼ କରନ୍ତି ରାଗରେ ।

ବାଳମୁକୁନ୍ଦ ବାବୁଙ୍କର ତାଙ୍କ ବାପାଙ୍କ ଉପରେ ଭାରି ରାଗ । ତାଙ୍କୁ କ'ଣ ଆଉ ନାଁ ମିଳୁନଥିଲା ? ଖାଲି ବାପାଙ୍କ ଉପରେ ନୁହେଁ, ଅଫିସରେ ଯେତେ ଝିଅ କିରାଣୀ ଅଛନ୍ତି, ସେମାନଙ୍କୁ ଭାରି ରାଗନ୍ତି ସେ । ସବୁଗୁଡ଼ା ମିଛୁଟାରେ ହେଲେ ''ବାଳବାବୁ'', ''ବାଳବାବୁ'' କହି ହୁରିପକାନ୍ତି । ବିଶେଷ କରି ମୀନା । ''ବାଳବାବୁ'' ବୋଲି ଡାକି ଦେଇ ସମସ୍ତଙ୍କୁ ଚାହିଁ ସେ ହସିଦିଏ ।

ସେ ଯାହାହେଉ ତପନ ଜୟନ୍ କରିବା ପୂର୍ବରୁ ମୀନା ବାଳବାବୁଙ୍କ ସଙ୍ଗେ ଯାହା ପଦେଅଧେ କଥା ହେଉଥିଲା । ତପନ ଆସିବା ପରେ ସେ ସବୁ ଏକବାର ବନ୍ଦ । ଖାଲି ମୀନା କାହିଁକି ? ସବୁ ଝିଅ ଗୁଡ଼ା ସେ ଟୋକାଟା ପଛରେ ପଡ଼ିଛନ୍ତି । ବାଳଗୋବିନ୍ଦ ବାବୁ ମନେ ମନେ ସାନ୍ତ୍ୱନା ଦିଅନ୍ତି । ତାଙ୍କୁ ତ ବୟାଳିଶ ପୂରିଲା, ଛାଡ । ଆଉ ସେ ନାଁ ରୁ ଏବେ କ'ଣ ମିଳିବ ?

ସେଦିନ ସାଢ଼େବାରଟା ବାଜିଲାଣି । ତପନ ଦେଖିଲା ତା ପଛେ ପଛେ ସ୍ମିତା କ୍ୟାଣ୍ଟିନ୍ ଆଡକୁ ମୁହାଁଇଛି । ଏ ଝିଅଟା ବି ଏକପ୍ରକାର ଅଦ୍ଭୁତ ଜୀବ । ସୁନ୍ଦରୀ ବୋଲି ତା'ର ଭାରି ଗର୍ବ । ସବୁ ପୁଅଙ୍କୁ ଅଳ୍ପଚେଷ୍ଟାରେ ଫାନ୍ଦରେ ପକାଇ ଦିଏ । ସୁନ୍ଦରୀମାନଙ୍କର ରୂପ ହିଁ ଅନ୍ୟର ସର୍ବନାଶର କାରଣ । ପୁଅ ପିଲାଟେ ଦେଖିଲେ ଏମାନେ ଯାହା ହୁଅନ୍ତି ନା, ସେକଥା ନକହିଲେ ଭଲ । ତଥାପି ଅନ୍ୟ ସୁନ୍ଦରୀମାନଙ୍କ ଠାରୁ ସ୍ମିତା ଟିକିଏ କମ୍ ଫୁଲେଇ ।

ଅଫିସ୍‌ର ବାର୍ଷିକୋତ୍ସବର ପ୍ରସ୍ତୁତି ଚାଲିଥାଏ । ଯିଏ ଯେଉଁ କାମରେ ବ୍ୟସ୍ତ । ହଠାତ୍ ତପନ ଦେଖିଲା ଅଫିସ୍ ପଛପଟ ଆମ୍ବଗଛ ଉହାଡ଼ରେ ଥାଇ ମୀନା ତା' ଆଡ଼କୁ ହାତ ଠାରୁଛି । ସେ ମୀନା ପାଖକୁ ବାଧ୍ୟ ହେଲା ଯିବାପାଇଁ । ମୀନା ତପନକୁ କହିଲା- ''ତମ ହୃଦୟଟା କ'ଣ କାଠ ନା ପଥର ? ଭଲ ପାଇବା କି ଜିନିଷ, ତୁମେ କ'ଣ କେବେ ଅନୁଭବ କରିନା ? ଆମ ବାହାଘର କେବେ ହେବ କହୁନା କାହିଁକି ? ଭଲ ପାଉନା କି ?

ତପନ କ'ଣ କହିବ ଭାବି କିଛି କ୍ଷଣ ନିରବ ରହିଲା, ତା'ପରେ କହିଲା, ପାଉନି କାହିଁକି ? ପାଉଛି, ହେଲେ ତୁମକୁ ନୁହେଁ, ମୀନା ମୁହଁଟା ଆମ୍ବିଳା କରି ବିରୁଡ଼ି ମାଇଲା ପରି ସେଠୁ ଗୋଟିଏ ମୁହୂର୍ତ୍ତରେ ପଳାଇଲା ।

ଠିକ୍ ଏ ଘଟଣାର ପନ୍ଦର ଦିନ ପରେ- ଦିନେ ତପନ କ୍ୟାଣ୍ଟିନ୍‌ରେ ଖାଉଛି, ସ୍ମିତା ତା'ହାତର ଦୁଇ ପାପୁଲିକୁ ଯାଇ ଚିପିଧରିଲା । କହିଲା- କେତେଦିନ ଆଉ ଏମିତି ଲୁଚିଲୁଚି ଭଲପାଇବ ? ତା'ହାତକୁ ନିଜ ହାତକୁ ମୁକୁଳାଇ ଆଣି ତପନ ଏତେତେଣେ ଚାହିଁଲା । ତା' ମୁହଁରୁ ଗୋଟାଏ ଝାଳ ବୋହି ପଡ଼ିଲା ।

ସ୍ମିତାକୁ ସେ ଭଲ ଭାବରେ ଜାଣେ । ସୁନ୍ଦରୀ ବୋଲି ସୀତାକାନ୍ତଟା ତା' ପଛରେ କିଛିଦିନ କୁକୁର ପରି ବୁଲୁଥିଲା । ସେ କଥା କିଏ ନଜାଣେ ? ବିନୋଦକୁ ଦେଖିବା ପରେ ସୀତାକାନ୍ତ କୁ ଭଗ୍ନ ପ୍ରେମର ଯୋଉ ନିର୍ଘାତ ଗୋଇଠା ପକେଇଲା ସ୍ମିତା, ସେଇଟା ସୀତାକାନ୍ତ ଛାତି ଭିତରେ ଏବେବି ଥୁଣ୍ଟା ବରଗଛ ହୋଇ ରହିଯାଇଛି । ଏବେ ପାଳି ପଡ଼ିଛି ତପନର । ରାଗରେ ତପନର ମୁହଁଟା ଲାଲ୍ ପଡ଼ିଗଲା ।

ଏମିତିକା ଝିଅ ଗୁଡ଼ାକ ପ୍ରକୃତରେ ଖାଲି ପରିବାରର ନୁହଁନ୍ତି ସାରା ନାରୀ ଜାତିର କଳଙ୍କ । ବାପା ମା ଭାଇଭଉଣୀ ସମସ୍ତେ ଥାଉଥାଉ ଏମାନେ ମୁରବି ପଣିଆ ଜାହିର୍ କରି ନିଜ ଭବିଷ୍ୟତଟାକୁ ବାଛିନିଅନ୍ତି । ସ୍ମିତା ପ୍ରଶ୍ନର ଉତ୍ତର ତ ନିଶ୍ଚୟ ଦେବାକୁ ହେବ । ତପନ କହିଲା - ''ଏଇ ପଞ୍ଚବାର୍ଷିକ ଯୋଜନା ଭିତରେ ମୋ ବାହାଘର ପ୍ରଶ୍ନ ଉଠୁନାହିଁ । ଢମ୍ ଢମ୍ ଚାଲି ପକେଇ କ୍ୟାଣ୍ଟିନ୍‌ରୁ ସ୍ମିତା ଉଠି ଚାଲିଗଲା ।

ନିଜକୁ ଧନ୍ୟବାଦ ଦେଲା ତପନ । କାରଣ ସ୍ମିତାର ଦର୍ପଣ ପରି ଚିକ୍ ଚିକ୍ ମୁହଁଟାକୁ ଦେଖିଦେଲେ ଯେ କେହି ହେଉନା କାହିଁକି ତା'ଛାତିରେ କେମିତି ଗୋଟାଏ କମ୍ପନ ସୃଷ୍ଟି ହୁଏ ।

ବେଳେବେଳେ ସ୍ମିତା ଅଦ୍ଭୁତ ବେଶ ଦେଖି ତାକୁ ଦୂରରୁ ଚିହ୍ନି ହୁଏନା । ପୁଅପିଲାଙ୍କ ପରି କାନ ଉପରକୁ ବାଳକଟା ସାଙ୍ଗକୁ ଫୁଲ୍‌ପ୍ୟାଣ୍ଟ, ଆଉ ବାନିୟନ୍ । ଛି, ଛି, ଛି, ଏଗୁଡ଼ାକୁ ଝିଅ ନା ପୁଅ, କ'ଣ କହିବ ?

ତପନର ସୁନେଲୀ ସ୍ୱପ୍ନରେ ଗୋଲାପର ମଧୁର ବାସ୍ନା ଭରିଯାଏ । ଯିଏ ଯାହାକୁ ଭଲ ପାଏ, ତାକୁ ସାତତାଳ ପାଣିତଳେ କାଠସିନ୍ଦୁକ ଭିତରେ ସୁନା ଫରୁଆରେ ସାଇତି ରଖିଥାଏ । ସବୁ ପୁଅତ ସେଇୟା ଚାହାନ୍ତି । ତାଙ୍କ ସ୍ତ୍ରୀ ତାଙ୍କର ଗୁପ୍ତଧନ ହୋଇରହୁ ।

ବାପାଙ୍କ ପାଖରୁ ଦି'ବର୍ଷ ହେଲା ଚିଠି ଉପରେ ଚିଠି । ବାପା ଲେଖୁଛନ୍ତି - ''ତୁ ନିଜେ ତୋ ପସନ୍ଦ ଅନୁସାରେ ଝିଅଟିଏ ବାଛିଲେ ଭଲ ହେବ ।'' ତପନ ଆଖିରେ ନିଦ ନାହିଁ । ରାତି ରାତି ଏମିତି ଉନିଦ୍ରାରେ ବେଳେବେଳେ ବିତିଯାଇଛି ।

ତପନ ଯେଉଁଦିନ ମନେମନେ ନିଷ୍ପତ୍ତି କରି ଶେଷ ସିଦ୍ଧାନ୍ତରେ ପହଞ୍ଚିଲା, ସେଦିନ ବାପାଙ୍କ ପାଖକୁ ଚିଠି ଖଣ୍ଡିଏ ଲେଖିଲା- ''ଆମ ଅଫିସ୍‌ରେ ଯେଉଁ କଳା ଝିଅଟିକୁ ଆପଣଙ୍କୁ ଚିହ୍ନା କରାଇଥିଲି, ମନେଥିବ । ଆପଣଙ୍କର କିନ୍ତୁ ଗୋଟିଏ ଗୋରା ଝିଅ ପସନ୍ଦ ହୋଇଥିଲା ମୁଁ ଜାଣେ । କିନ୍ତୁ ମତେ କ୍ଷମା କରିବେ - ମୋର ସେଇ କଳା ଝିଅଟିକୁ ପସନ୍ଦ । ଜୀବନ ସାଥୀ ରୂପେ ତାକୁ ପାଇବାକୁ ମୋର ଇଚ୍ଛା । ଆପଣ ଜାଣନ୍ତି ରୂପ ଅପେକ୍ଷା ଗୁଣର ମୂଲ୍ୟ କେତେବେଶି । କାଲି ହେଲେ ମଧ୍ୟ ଆପଣ ଗୁଣର ବୋହୂଟିଏ ପାଇବେ । ମା'ଙ୍କ ଆଶା ସଫଳ ହେବ । ଯଦି ଏଥିରେ ଆପଣ ଏକମତ ତେବେ ସେମାନଙ୍କ ଘରକୁ ପ୍ରସ୍ତାବ ପଠାଇ ପାରନ୍ତି ।''

ଯେଉଁଦିନ ଛନ୍ଦା ଓ ତପନର ବାହାଘର କାର୍ଡ଼ ଅଫିସ୍‌ରେ ବଣ୍ଟାହେଲା, ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଏକ ସ୍ୱରରେ କହି ଉଠିଲେ- ''ବାଃ ତପନ ବା' ଜୀବନ ସାଥୀ - ବାଛିବାରେ ବାସ୍ତବିକ୍ ତୁ ଶ୍ରେଷ୍ଠ ବିଚାରକଟିଏ !!!

୦•୦

# - ମା -

ଦୀର୍ଘପଥ ଅତିକ୍ରମ କରି ଆସିବାପରେ ମିଲି ପିଲାଟିକୁ ଧରି ପହଞ୍ଚିଲା, ମସ୍ତବଡ଼ ଗୋଟାଏ କୋଠା ସାମ୍ନାରେ । ଗେଟ୍ ପାଖରେ ଠିଆ ହୋଇ କରୁଣ କଣ୍ଠରେ ଡାକିଲା- ''କିଏ ଅଛ ମା' ଗଣ୍ଡିଏ ଭିକ୍ଷା ଦିଅ ।'' କଳାକଳା ଗହିରିଆ ଆଖିତଳୁ ଝରି ଆସିଛି ଦି ଟୋପା ତତଲା ଲୁହ । ସବୁଆଡ଼କୁ ଟିକିଏ ଆଖି ବୁଲାଇ ଚାହିଁଲା ମିଲି । କୋଠାଟା ସତେ ମେଘକୁ ଛୁଇଁଛି ।

ଏତେ ବଡ଼ ଦୁନିଆରେ ଆଜି ମିଲିର କିଛି ନାହିଁ, କେହି ବି ନାହାନ୍ତି । ତା'ର କୌଣସିଥିରେ ଲୋଭ ବି ନାହିଁ କିନ୍ତୁ ଆଶ୍ଚର୍ଯ୍ୟର କଥା ପେଟ ଚାଖଣ୍ଡକ ପାଇଁ ଏତେ ଲୋଭ କାହିଁକି ? ସେଇ ଲୋଭରେ ସିନା ସେ ଆଜି ଅନ୍ୟର ଦ୍ୱାରସ୍ଥ ହୋଇଛି ! ତଥାପି ସେ ଚାହିଁଲେ ମରି ପାରିଥାନ୍ତା ? କିନ୍ତୁ ସେ ନବଞ୍ଚିଲେ ପିଲାଟା ବଂଚିବ କେମିତି ?

ସେଦିନ କଥା ମନେ ପଡ଼ିଲେ ଦେହ ତା'ର ଆଜିବି ଥରି ଉଠେ । ମାତ୍ର ତିନୋଟି ବର୍ଷରେ ଦାମ୍ପତ୍ୟ ସୁଖରେ ପୂର୍ଣ୍ଣଚ୍ଛେଦ ପଡ଼ିଥିଲା । ସବୁ ଦୁଃଖକୁ ପିଇଯାଇ ବିଞ୍ଚିବାକୁ ଚେଷ୍ଟା କଲାବେଳେ ସହଦେବ ତାକୁ ବଞ୍ଚିବାକୁ ଦେଇନଥିଲା ସୁଖଶାନ୍ତି ଭିତରେ । ଅତି ଆପଣାର ସହଦେବ ।

ଆଜିବି ତା'ର ମନେ ଅଛି ସେଦିନ ରାତିକଥା । ଠିକ୍, ରାତି ଅଧ । ହଠାତ୍ ସହଦେବ ଆସି ମିଲିର ଶୋଇଲା ଶେଯ ପାଖରେ ବସି ଯେତେବେଳେ ତା'ନୁଖୁରା ବାଳଗୁଡ଼ାକୁ ଆଉଁସିଲା, ସେତେବେଳେ ମିଲିର ନିଦ ଭାଙ୍ଗିଗଲା । ସେ ନିଜକୁ ଦିଅର ଠାରୁ ବଂଚାଇବ ବୋଲି ବିକଳରେ ସେଦିନ ଚିତ୍କାର କରିଥିଲା କିନ୍ତୁ ଅନ୍ୟମାନେ ବରଂ ତାକୁ ଦୋଷଦେଇ ଥିଲେ, ତା'ମୁହଁକୁ ଚୁପ୍ କରାଇଥିଲେ । ତା' ନାଁରେ ନିନ୍ଦା ଗାଇ ବୁଲିଥିଲେ ଗାଁ ସାରା ।

ଏ ଘଟଣାର ଅଳ୍ପଦିନ ପରେ ମିଲି ଘରଛାଡ଼ି ଚାଲିଆସିଥିଲା । ଆଉ ଉପାୟ ତ କିଛି ନଥିଲା ! ତା'ର ପ୍ରତିବାଦର ସ୍ୱର ଶୁଣିବାପାଇଁ କେହି ମଧ୍ୟ ନଥିଲେ । ତା'ପରେ

ମିଲି ନିଜକୁ ଭିକାରୁଣୀ ଭାବରେ ଉପସ୍ଥାପନା କଲା, ସମାଜ ସମ୍ମୁଖରେ । ଦୁନିଆ ତାକୁ ଦୂର୍ ଦୂର୍ କହିଛି, ଘୃଣାରେ ନାକଟେକିଛି । ତା'ମନର ଅସହ୍ୟ ବେଦନା, ଅର୍ଦ୍ଧଦଗ୍ଧ ହୃଦୟର ଜଳନ୍ତା ନିଆଁକୁ ନେଇ ସେ ତଥାପି ବଞ୍ଚିଛି ।

ଯନ୍ତ୍ରଣାର ବାଟ ସରିନାହିଁ, ପେଟର ଭୋକ ବି ମରିନାହିଁ ଜୀବନର ଅବସାନ ଘଟିବ ବା କିପରି ? ମିଲି ଅନେକ ଥର ଭାବିଛି ପିଲାଟିକୁ ଅନାଥାଶ୍ରମରେ ଛାଡ଼ିଦେଇ ସେ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିବ କିନ୍ତୁ ମନ ତା'ର ମାନିନାହିଁ । ଛାତି ଫାଟି ଯାଇଛି । ପିଲାକୁ ଛାଡ଼ି ସେ କ'ଣ ବଂଚି ପାରିବ ? ଅସ୍ତବ୍ୟସ୍ତ ପାଦ ତା'ର ଆଗକୁ ଚାଲିଛି ।

କଟକ ସହରର ଧାଡ଼ିବନ୍ଧା କୋଠା । ଆକାଶକୁ ମୁଣ୍ଡଟେକି ଠିଆ ହୋଇଛନ୍ତି ସବୁ । ଏକ ବିରାଟ ହଳଦିଆ କୋଠା ସାମ୍ନାରେ ଠିଆ ହେଲା ମିଲି । ସତୃଷ୍ଣ ନୟନରେ ଚାହିଁ ରହିଲା ଉପର ମହଲାକୁ । ମିଲି ବିଶ୍ୱାସ କରି ପାରିଲାନି ଯେ ତା'ରି ପରି ମଣିଷମାନେ ହିଁ ଏହି ଘରେ ରହନ୍ତି । ତା'ପରି ଆଖି, ପାଟି, ନାକ - ସବୁଥିବା ମଣିଷ ସେମାନେ ।

ସେଇ ମଣିଷମାନେ କିନ୍ତୁ ମିଲିଠାରୁ ଅନେକ ଅଲଗା । ଏମିତି ଭାବୁଭାବୁ ସିଡ଼ି ଉପରୁ ଓହ୍ଲାଇଲେ ଜଣେ ବାବୁ । ମିଲିର ଭାବନା ଅଟକି ଗଲା । ପିଲାଟିକୁ ଚାହିଁ ବାବୁ ପଚାରିଲେ- କ'ଣ ପିଲାଟିକୁ କିଛି ଖୋଇବାକୁ ଚାହୁଁଛ ? ''ହଁ ବାବୁ ଦିନସାରା କିଛି ଖାଇନାହିଁ । ତୁମର ଧର୍ମ ହେବ ବାବୁ ।''

ପୁଣି ସିଡ଼ିବାଟେ ଉପର ମହଲାକୁ ଫେରିଗଲେ ସିଏ । କିଛି ସମୟପରେ ଘରେ ରହୁଥିବା ପିଲାଟି ଅନେକ ଖାଦ୍ୟ ସାମଗ୍ରୀ ଧରି ଆସିଲା । ମିଲି ନିଜ ଆଖିକୁ ବିଶ୍ୱାସ କରି ପାରିଲାନି । ପେଟ ଭରି ମା'ପିଲା ଖାଇସାରି ଫେରିଯାଉଥିଲେ ନିଜ ଗନ୍ତବ୍ୟ ପଥରେ । ପଛରୁ ଚାକର ପିଲାଟି ଡାକି କହିଲା- ''ଆମ ରଜତ ବାବୁ ଭାରି ଭଲ, ଭାରି ଦୟାଳୁ । ତୁମେ କେବେକେବେ ଆସିଲେ ମୁଁ ଖାଇବାକୁ ଦେବି '' ।

ରଜତ ନିଜ ବେଡ୍ ରୁମ୍‌ରେ ବସି କାନ୍ଥରେ ଟଙ୍ଗା ହୋଇଥିବା ଫଟୋ ଆଡ଼େ ଏକଲୟରେ ଚାହିଁରହିଥିଲେ । ଏ ଫଟୋଟି ମୁନ୍‌ମୁନ୍‌ର । ତାଙ୍କ ପୁଅ । ଯେଉଁଦିନ ରଜତର ସ୍ତ୍ରୀ ପ୍ରସବ ବେଦନାରେ ପ୍ରାଣ ହରାଇଥିଲେ, ସେଦିନ ଛାଡ଼ି ଯାଇଥିଲେ ଏଇ ନିରୀହ ନିଷ୍ପାପ ଶିଶୁପୁତ୍ରଟିକୁ । ତାକୁ ନେଇ ବଂଚି ରହିଥିଲେ ରଜତ । କିନ୍ତୁ ଯେଉଁଦିନ ଦଶମାସର

ପୁଅ ମୁନ୍‌ମୁନ୍ ତାଙ୍କୁ ଛାଡ଼ିଚାଲିଗଲା, ସେହିଦିନୁ ରଜତ ଜୀଅନ୍ତା ଶବ ହୋଇବି ବଂଚି ରହିଛନ୍ତି ଏଯାଏ। ପିତୃମାତୃ ହୀନ ରଜତ ଆଜି ଏଡ଼େବଡ଼ ଦୁନିଆରେ ଅସହାୟ, ହାହାକାର ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତ।

ସେଦିନ ସଂଧ୍ୟା ପାଞ୍ଚଟା। ରଜତ ଦେଖିଲେ ସେହି ଦିନର ସେଇ ଭିକାରୁଣୀଟି ତାଙ୍କ ଦୁଆରେ ଠିଆହୋଇଛି। ବାଲ୍‌କୋନି ଉପରୁ ସେ ଚାକର ପିଲାଟିକୁ ଡାକି କହିଲେ ତାକୁ କିଛି ଖାଦ୍ୟ ଦେବାପାଇଁ। ପିଲାଟି ତାକୁ କିଛି ଖାଦ୍ୟ ଦେଇ ଫେରିଆସୁଥିବାବେଳେ ରଜତ ଭିକାରୁଣୀଟିକୁ ରହିବା ପାଇଁ କହିଲେ।

ଭିକାରୁଣିଟି ଆଶ୍ଚର୍ଯ୍ୟ ହୋଇ ରଜତକୁ ଚାହିଁରହିଲା। ଭୟରେ ତା' ମୁହଁରୁ ଝାଳ ବୋହିଗଲା। ରଜତ ସିଡ଼ି ଉପରୁ ତଳକୁ ଆସି ମିଳିକୁ ପଚାରିଲେ- ତୁମେ ଭିକ କାହିଁକି ମାଗୁଛ ? ତୁମ ପିଲାଟିର ସବୁ ଖର୍ଚ୍ଚ ମୁଁ ଦେବି ତାକୁ ବଡ଼ କରିବି କିନ୍ତୁ ତୁମେ ତାକୁ ଧରି ଏଇଠି ରହିପାରିବ କି ?

''କେଉଁଠି'' ?- ମିଳି ପ୍ରଶ୍ନଟି ପଚାରିଦେଇ ଘନ ଘନ ନିଃଶ୍ୱାସ ମାରିଲା। ତା' ସାରା ଦେହ ଥରିବାକୁ ଲାଗିଲା। ସେ ଭୟାତୁରା ଜାଣି ରଜତ କହିଲେ- ''ଭୟ କରିବାର କିଛିନାହିଁ ଏଇ ଯେଉଁ ବିରାଟ କୋଠାଘର ଦେଖୁଛ, ସେଥିରୁ ଗୋଟିଏ ବଖରା ତୁମର - ତୁମେ ପିଲାଟିକୁ ରଖି ମଣିଷ କର- କେବଳ ଏ ଘରଦ୍ୱାରର ଟିକିଏ ଯତ୍ନ ନେବ।''

ଏତିକି କହି ରଜତ ଦୁଇବର୍ଷର ଛୋଟ ଶିଶୁଟିକୁ ଚାହିଁ ରହିଲେ ଅପଲକ ନେତ୍ରରେ। ତା' ପୁଅ ଠିକ୍ ଦେଖିବାକୁ ଏମିତି ଗୋରା ତକ୍ ତକ୍ ଥିଲା। ଏମିତି ଚାହୁଁଥିଲା- ନିଜ ପୁଅଟିକୁ ସେ ଯେମିତି ପାଖରେ ପାଇଛନ୍ତି ଆଜି।

ମିଳିର ପ୍ରାଣର ତନ୍ତ୍ରୀ ଭିତରେ ଝଡ଼ର ଝଙ୍କାର। ଭୟ ଓ ଆଶଙ୍କାରେ ହୃଦୟ କମ୍ପୁଛି। କ'ଣ ଉତ୍ତର ଦେବ ସେ ଭାବି ପାରୁନି। ସେ ଚାଷୀ ଘରର ବୋହୂଥିଲା। ପରିସ୍ଥିତି ଆଜି ତାଙ୍କୁ ପଥର ଭିକାରୁଣୀ କରିଛି।

ତାକୁ ନିରବ ରହିବାର ଦେଖି ରଜତ ଆଉ କିଛି କହିବାକୁ ଉଚିତ୍ ମନେ କଲେନି। ସଂଧ୍ୟା ଛ'ଟା, ବାହାରେ ପ୍ରବଳ ଝଡ଼ ତୋଫାନ। ହଠାତ୍ ଆକାଶ ଅନ୍ଧାରରେ ଛାଇଗଲା। ରାସ୍ତାର ଲାଇଟ୍ ଖୁଣ୍ଟି ସବୁ ଲିଭି ଗଲାଣି। ବିଜୁଳି ଘଡ଼ଘଡ଼ି ଶବ୍ଦରେ କାନ ଫାଟି ପଡୁଛି। ମିଳିକୋଳରେ ଶୋଇ ପଡ଼ିଲାଣି ଛୋଟଶିଶୁ ପୁତ୍ରଟି।

ରଜତ କହିଲେ- ‘‘ଏବେ ପ୍ରବଳ ତୋଫାନ୍ ଆଉ ବର୍ଷାରେ ତୁମେ କୁଆଡ଼େ ଯିବ ? ଏଇ ତଳ ବଖରାଟିରେ ରାତିରେ ରହିଯାଅ- ବରଂ ସକାଳ ହେଲେ ପିଲାକୁ ଧରି ଚାଲିଯିବ ।’’ ମିଲି ତଥାପି ନିରବ । ଚାକର ପିଲାକୁ କିଛି ଖାଦ୍ୟ ଆଣି ଦେବା ପାଇଁ କହି ରଜତ ଧିରେ ଧିରେ ଉପର ମହଲାକୁ ଚାଲିଗଲେ ।

ଡ୍ରଇଂ ରୁମ୍ ପାଖକୁ ଲାଗି ଥିବା ଛୋଟ କୋଠରୀଟିରେ ପିଲାଟି ମିଲିକୁ ଆଣି ଖାଇବା ଦେଇ ଚାଲିଗଲା ।

ବର୍ଷାମୁଖର ଭୟଙ୍କର ରାତ୍ରିର ଆତଙ୍କିତ ଚିତ୍କାର ମିଲିର କାନରେ ବାରମ୍ବାର ପ୍ରତିଧ୍ୱନିତ ହେଉଛି । ମନେ ମନେ ସେ ଭାବୁଛି କିପରି ସକାଳ ପାହିବ, ସେ ପୁଅକୁ ଧରି ପଳାଇ ଯିବ । ସାରାରାତି ତା’ ଆଖିକୁ ନିଦନାହିଁ ।

ଅତି ଅଳିଅଳ ସ୍ନେହର ଦିଅରକୁ ସେ କେତେ ଆପଣାର ଭାବି ନଥିଲା ! କିନ୍ତୁ କ’ଣ ସେ ପାଇଲା ତା’ଠାରୁ ? ଆଉ ଏଇ ବାବୁ ! କିଏ ତା’ର ? ଆପଣାର ନୁହନ୍ତି ବରଂ ସାତପର । କିପରି ବିଶ୍ୱାସ କରିବ ସିଏ ? ସଦାପରି ସେ ସ୍ୱାର୍ଥପର ନୁହଁନ୍ତି ତ ? ତେବେ କେଉଁଥି ପାଇଁ ? କେଉଁଥି ପାଇଁ ସେ ତାକୁ ଆଶ୍ରୟ ଦେବାକୁ ଚାହୁଁଛନ୍ତି ?

ରାତ୍ରିର ଅଂଧକାର ଘନିଭୂତ ହୋଇ ଉଠୁଛି ଧିରେ ଧିରେ । ବର୍ଷା, ବିଜୁଳି ଓ ଘଡ଼ଘଡ଼ି ସହ ପ୍ରବଳ ତୋଫାନ୍ ସୁ ସୁ ଗର୍ଜନ କରୁଛି । ରାତି ଆସି ପାହିବାକୁ ବସିଲାଣି । ମିଲି ରାତିସାରା ଭାବୁଛି ।

କେଡ଼େ ଉଦାର ସତେ ଏଇ ବାବୁ ଜଣକ ! ମିଲି ମନେ ମନେ ବାବୁଙ୍କ ପାଦ ତଳେ ପ୍ରଣାମ କଲା । ବାବୁ ଦେଇଥିବା ଚାଦର ଖଣ୍ଡିକ ପିଲାଟି ଘୋଡ଼େଇ ହୋଇ ନିଘୋଡ଼ ନିଦରେ ଶୋଇଯାଇଛି ।

ମିଲିର ମନରେ ଅନେକ ମଧୁର ସ୍ୱପ୍ନ   ସେ ଯଦି ଏଠି ପିଲାଟିକୁ ଧରି ରହିଯାଆନ୍ତା ! ଘର ଯତ୍ନ ନେବା ପାଇଁ ଚାକିରୀ ଖଣ୍ଡିଏ ପାଇଯାଆନ୍ତା ! କି ସୁନ୍ଦର ତା ଜୀବନଟି କଟି ନଯାଆନ୍ତା ? ପୁଅ ତା’ର ପାଠପଢ଼ି ମଣିଷ ପରି ମଣିଷ ଟିଏ ତ ହୋଇପାରନ୍ତା ? ଏମିତି ଭାବୁ ଭାବୁ, ମିଲିକୁ କିଏ ଜଣେ ଚାବୁକ୍ ଧରି ଖୁବ୍ ଜୋର୍‌ରେ ଦୁଇପାହାର ଦେଲା । ସେ ସବୁ ଆଡ଼କୁ ଚାହିଁଲା ।

କେହି କେଉଁଠି ନାହାନ୍ତି । ମିଲି ଜାଣିଛି, ଏମିତି ଚାବୁକ୍ ଧରି ତା'ବିବେକ ବେଳେବେଳେ ତାକୁ ଏମିତି ନିଷ୍ଠୁର ଭାବରେ ମାରେ । ନା, ନା, ସେ ଏସବୁ କ'ଣ ଭାବୁଛି ? ସେ ଯଦି ଏଠି ରହିବ ତେବେ ଲୋକେ ତାକୁ କ'ଣ କହିବେ ? ଭିକାରୁଣୀ ବୋଲି କ'ଣ ତା'ର ଆତ୍ମସମ୍ମାନ ନାହିଁ ।

ମିଲିର ଆଖିରୁ ଧାର ଧାର ଲୁହ ଝରି ଆସିଲା- ମନେ ମନେ ଭାବିଲା ସେ ଚାଲିଯିବ ସତ, କିନ୍ତୁ ସକାଳ ପାହିଲେ ତା' ପୁଅକୁ ଖାଇବାକୁ କ'ଣ ଦେବ ? ତିନିଦିନର ପଚା ପଖାଳ ? ଶୁଖିଲା ରୁଟି ? ଅଇଁଠା ପାଉଁରୁଟି ?

ଏମିତି ମାଂସ ତରକାରୀ, ଡାଲିଭାତ ସିଏ କେଉଁଠୁ ପାଇବ ? ସ୍କୁଲ୍‌ରେ ପାଠ ପଢ଼ିବାର ସୁଯୋଗ, ଏଠୁ ଯିବାପରେ ତା'ପୁଅ ଭାଗ୍ୟରେ ସାତସ୍ୱପ୍ନ ହୋଇଯିବ । ସେ ଭିକ ମାଗୁଛି । ତା ପିଲାକୁ ମଧ ଭିକ ମାଗିବାକୁ ପଡ଼ିବ ତା'ପରି ।

ନା, ନା ଏକଥା ସେ କଦାପି କରାଇ ଦେବନି । ସେ ବଂଚିଥିବା ଭିତରେ ତା'ପିଲା ନିଶ୍ଚୟ ବଡ଼ ହେବ । ରଜତ ବାବୁଙ୍କ ପରି ବାବୁ ହେବ । ଭଲଖାଇବ ଭଲ ପିନ୍ଧିବ ଭଲ ଚାକିରୀ କରି ସୁଖରେ ରହିବ ।

ମିଲି ମନେ ମନେ ସ୍ଥିର କଲା ତା'ରି ହାତରେ ହିଁ ତା' ପୁଅର ଭବିଷ୍ୟତ ଅଛି । ସେ ଚାହିଁଲେ ସବୁହେବ । ମା'ର କଅଁଳ ମନକୁ ଟାଣ କରିବାକୁ ହେବ । ଛାତିକୁ ପଥର କରିବାକୁ ହେବ । ତା'ନହେଲେ ତା'ପୁଅ ମଣିଷ ହୋଇ ଦୁନିଆରେ ଠିଆ ହୋଇ ପାରିବନି ।

ମିଲି ପିଲାଟିକୁ ନିଜ ଦେହରୁ ଛଡାଇ ଧିରେ ଧିରେ ଅଲଗା ଶୁଆଇଲା । ଥପ୍ ଥପ୍ ହୋଇ ଟୋପା ଟୋପା ଲୁହ ଖସିପଡ଼ିଲା, ମିଲିର ଶୁଖିଲା ଓଠ ଉପରେ । ପାଣି ପରି ପିଇଗଲା ସେଇ ଲୁହ ସବୁକୁ । ଛାତି ଭିତରଟା ଅସହ୍ୟ ବେଦନାରେ ସଙ୍କୁଚିତ ହେଉଥିଲା । ହାତ ଓ ପାଦ ଅବଶ ଲାଗୁଥିଲା ତଥାପି ମିଲି ଚୁପ୍‌ଚାପ୍ ଦ୍ୱାର ଖୋଲି ବାହାରକୁ ଆସିଲା ।

ଓଃ ପ୍ରଚଣ୍ଡ ତୋଫାନ - ବର୍ଷାରେ ରାସ୍ତା ଦିଶୁନାହିଁ । ଧିରେ ଧିରେ ସେ ଗେଟ୍ ଖୋଲିଲା । ସତେ ଯେମିତି ପବନ ତାକୁ ଉଡ଼ାଇ ନେଲା ଅନେକ ଦୂରକୁ- ସେଇ ପୁରୁଣା ବିରାଟ ଓସ୍ତ ଗଛ ମୂଳକୁ । ଲୁଗା କାନିକୁ ଦେହ ଉପରକୁ ଭିଡ଼ିଆଣି ଗଛ ମୂଳେ ବସିବାକୁ ଚେଷ୍ଟାକଲା ମିଳି । ଅନ୍ତତଃ ରାତିଟା ପାହିଗଲେ ସେ ଅନ୍ୟତ୍ର ଚାଲିଯିବ ।

କିନ୍ତୁ ସେ ହାରିଗଲା । ତା' ମା'ମନକୁ ଟାଣ କରିପାରିଲାନି, ମା'ର ଛାତିକୁ ପଥର କରି ପାରିଲାନି ସିଏ । ଶିଶୁ ପୁତ୍ରର ବିଚ୍ଛେଦକୁ ମିଳି ବରଦାସ୍ତ କରିପାରିଲାନି ।

ହଠାତ୍ ଗଳା ତା'ର ଶୁଖି ଆସିଲା । ଜିଭ ଭିତରକୁ ଟାଣି ହୋଇଗଲା । ଚାରିଆଡ଼ ଅଂଧାର ଦିଶିଲା । ସେ ଏକା,. ଆଜି ତା'ର କେହି ନାହିଁ । ଛାତି ଭିତରେ ଏକ ଦାରୁଣ ଯନ୍ତ୍ରଣା । ଗଛ ମୂଳେ ଶୋଇ ଗଲା ମିଳି ।

ଝଡ଼ ତୋଫାନ୍ ସବୁ ବନ୍ଦ - ରାତି ପାହି ସକାଳ ହେଲା । ଦଳ ଦଳ ଭିକାରୁଣି ଆସି ଗଛ ମୂଳେ ଜମା ହୋଇଥିଲେ । ନିଜ ନିଜ ଭିତରେ ପଚରା ପଚରି ହେଉଥିଲେ- "ତା'ପିଲାଟି ଗଲା କୁଆଡ଼େ ?" ମୁନିସିପାଲିଟି ଗାଡ଼ି ଆସି ଶବ ଉଠାଇ ନେଲା ।

ଛୋଟ ପୁଅଟିକୁ କୋଳରେ ଧରି କୋଠା ଛାତ ଉପରେ ଠିଆହୋଇ ଓସ୍ତ ଗଛ ଆଡ଼କୁ ଚାହିଁ ରହିଥିଲେ ରଜତବାବୁ । ନିରବରେ ତାଙ୍କ ଆଖିରୁ ଦୁଇଧାର ଲୁହ ଝରିପଡୁଥିଲା ।

ଭିକାରୁଣୀ ମା'ର ତ୍ୟାଗ ଆଗରେ ତାଙ୍କର ସମସ୍ତ ଧନ ସଂପତ୍ତି ତାଙ୍କୁ ତୁଚ୍ଛ ଲାଗିଲା ।

୦●୦

# ମରଣ ଯନ୍ତାର ନାୟିକା

ସିଗାରେଟ୍ ଧୂଆଁର କୁଣ୍ଡଳୀ ଭିତରେ ବେଳେବେଳେ ନିଜକୁ ହଜାଇ ଦେଉଥିଲେ ମିହିର୍ ସିଂହ । ସେ ବଡ଼ ଲୋକ, ତାଙ୍କ ପାଖରେ ଏବିଶାଳ ଧରାଟା ସରା ପରି ଦୃଶ୍ୟମାନ ହେଉଥିଲା । କ'ଣ ତାଙ୍କର ନାହିଁ ?

ଛୋଟ ହସର ରେଖାଟିଏ ଲାଖି ରହିଥିଲା ତାଙ୍କ ଦୁଇ ଓଠ ଫାଙ୍କରେ । ସେଇ ହସ ଭିତରେ ଲୁଚିରହିଥିଲା+ଅନେକ ଇପ୍‌ସିତ ସ୍ୱପ୍ନର ତାଜ୍ । ମନରେ ଥିଲା ଅନେକ ବିକଳ୍ପିତ ଯୋଜନା । ଭଲ, ମନ୍ଦ, ସୁଖ, ଦୁଃଖ, ନ୍ୟାୟ, ଅନ୍ୟାୟ ଏସବୁ ତାଙ୍କ ବାଁ ହାତର ଖେଳନା ଥିଲା । ଧନ ମାନର ପ୍ରାଚୁର୍ଯ୍ୟ ଭିତରେ ସେ ନିଜେ ହଜି ଯାଇଥିଲେ, ତେଣୁ ନିଜର ବ୍ୟକ୍ତିତ୍ୱକୁ ମଧ୍ୟ ହରାଇ ବସିଥିଲେ ।

ସେଦିନ ଅଫିସ୍ କାମ ପ୍ରାୟ ସରିଗଲାଣି । ବାକି ଦିନର କାମଗୁଡ଼ାକ ଦେଖିବାକୁ ହେବ । ମିହର୍ କାର୍ଯ୍ୟ ବ୍ୟସ୍ତ ଅଛନ୍ତି । କର୍ମଚାରୀମାନେ ପ୍ରାୟ ସମସ୍ତେ ପାଞ୍ଚଟା ବାଜିବାପରେ ଘରକୁ ଫେରିଲେଣି । ଜଣେ ଅଧେ କେଉଁଠି କେମିତି ବସି କାମ କରୁଛନ୍ତି । ଅଫିସ୍‌ଟା ନିଛାଟିଆ ଲାଗୁଛି ।

ମିହିର୍‌ଙ୍କ ଟେବୁଲ୍ ପାଖରୁ ପ୍ରାୟ କୋଡ଼ିଏ ପଚିଶ ହାତ ଦୂରରେ, ମୁଖ୍ୟ ଦ୍ୱାରକୁ ଲାଗି ଏକ ବିରାଟ ଝରକା । ସେତେବେଳକୁ ସନ୍ଧ୍ୟା ନଇଁ ଆସିଲାଣି ପୃଥିବୀ ପୃଷ୍ଠକୁ । ଅଂଧକାର ଯଦିଓ ସେ ପର୍ଯ୍ୟନ୍ତ ରାଜତ୍ୱ ବିସ୍ତାର କରିନାହିଁ, ତଥାପି ଆକାଶରେ ଧୂସର ରଙ୍ଗ ଛାଇଗଲାଣି । ଅର୍ଥାତ୍ ସନ୍ଧ୍ୟା ସମାଗତ ପ୍ରାୟ ।

ମିହିର୍ ହଠାତ୍ ସେଇ ବିରାଟ ଝରକା ଆଡ଼କୁ ଚାହିଁଦେଲେ ଏକ ଅସ୍ପଷ୍ଟ ଶବ୍ଦ ଶୁଣି । ପାଦର ଖସ୍ ଖସ୍ ଶବ୍ଦ ବୋଧହୁଏ । କିନ୍ତୁ କୌଣସି ବ୍ୟକ୍ତିର ସନ୍ଧାନ ନାହିଁ । ସେ ପୁଣି କାମରେ ମନ ଦେଲେ । କିଛି ସମୟ ପରେ ଘନ ଘନ ନିଃଶ୍ୱାସ ମାରିବାର ଶବ୍ଦ ଭାସି ଆସିଲା ତାଙ୍କ ନିକଟକୁ । ଏଥର ସେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ଝରକା ଆଡ଼କୁ ।

ଏକ ଅଦ୍ଭୁତ ଦୃଶ୍ୟ ଦେଖିଲେ ସେ । ତୋଫାନା ଠିଆ ହୋଇଛି- ଝରକା ପାଖରେ । ମିହିର୍ ପ୍ରଥମେ ବିଶ୍ୱାସ କରି ପାରିଲେନି ଆଖିକୁ । ସତରେ କ'ଣ ତୋଫାନା ଆସି ଠିଆ ହୋଇଛି ? ଅଫିସ୍‌କୁ ଆସିବାକୁ ସେ କେବେ ବି ସାହସ କରିନଥିଲା । ଆଉ ଆଜି କେମିତି ଆସିଲା ଏଠିକୁ ? ସେ ସ୍ୱପ୍ନ ଦେଖୁ ନାହାନ୍ତି ତ ?

ଏଭଳି ଅସ୍ୱାଭାବିକ ଘଟଣା ତାଙ୍କ ମନରେ ଭୟ ସଞ୍ଚାର କଲା । ତାଙ୍କ କାନରେ କେତୋଟି ଅସ୍ପଷ୍ଟ ଶବ୍ଦ ଶୁଣାଗଲା- ''ତୁମେ ସତ କୁହ ମିହିର୍, ମୋ ପ୍ରତି ଅନ୍ୟାୟ କିରିଛ ନା ନାହିଁ ? ମୋ ସମ୍ମାନରେ ଆଞ୍ଚ ଆଣିଛ ନା ନାହିଁ ? ମିହିର୍‌ଙ୍କ ଅଜାଣତରେ ତାଙ୍କ ପାଟିରୁ ବାହାରି ପଡ଼ିଲା କେତେଟା ଶବ୍ଦ- ନା, ନା, ମୁଁ କିଛି କରିନି''- ମିହିର୍‌ଙ୍କ ପାଟି ଶୁଣି ଅନ୍ୟକୋଠରୀରୁ ବାହାରି ଆସିଲେ ଜିତେନ୍ଦ୍ର ବାବୁ- ପଚାରିଲେ- କ'ଣ ହେଲା ସାର୍ ? '' ନା, କିଛି ନାହିଁ- ଏତିକି ମାତ୍ର ଉତ୍ତରଦେଲେ ମିହିର୍ । ତାଙ୍କ ଛାତି ଥରିବାକୁ ଲାଗିଲା କାରଣ ଧୀରେ ଧୀରେ ସେହି ଅସ୍ପଷ୍ଟ ନାରୀ ମୂର୍ତ୍ତିଟି ତାଙ୍କ ଟେବୁଲ୍‌ର ନିକଟବର୍ତ୍ତୀ ହେଉଛି  ଠିକ୍ ସେହି ରୂପ- ହାତରେ ମେଞ୍ଚା ମେଞ୍ଚା ନାଲି ଚୁଡ଼ି । ମଥାରେ ଲାଲ୍ ରଙ୍ଗର ବିନ୍ଦି । ଆଜି କିନ୍ତୁ ସେ ନାଲି ରଙ୍ଗର ଶାଢୀ ନାହିଁ । ସତେ ଯେମିତି ଏକ ଉଲଗ୍ନ ନାରୀ ମୂର୍ତ୍ତି, ହାତରେ ଧରିଛି ପ୍ରକାଣ୍ଡ ତ୍ରୀଶୂଳ । ଆଖିରୁ ରକ୍ତ ଝରୁଛି ଓଠରୁ ଅଗ୍ନିର ସ୍ଫୁରଣ- ମିହିର୍‌ଙ୍କର ସାରା ଶରୀର ଭୟରେ କମ୍ପିବାକୁ ଲାଗିଲା । ହଠାତ୍ ଏକ ଭୟଙ୍କର ଶବ୍ଦ ! ମିହିର୍ ଆଉ ଅଫିସ୍ ଭିତରେ ରହି ପାରିଲେନି । ସେହି ଭୟଙ୍କର ଶବ୍ଦ କକ୍ଷ ଭିତରେ ତୋଳି ଦେଲାଣି ଏକ ଆତଙ୍କିତ ମୁହୂର୍ତ୍ତ । ଏ କ'ଣ? କୋଠରୀ ସାରା, ଅନ୍ଧକାର- କିନ୍ତୁ ସବୁ ଲାଇଟ୍ ତ ଜଳୁଛି ।

ହଠାତ୍ ମିହିର୍ ବାହାରକୁ ଚାଲିଆସିଲେ । ମୁହଁ ଉପରେ ବିନ୍ଦୁ ବିନ୍ଦୁ ଝାଳ-ବାହାର ବାଲ୍‌କୋନି ପାଖରେ ଆସି ସେ ଠିଆ ହେଲେ । ପାଖ ରୁମ୍‌ରୁ ରମୀୟ ବାବୁ ପଚାରିଲେ- ''ସାର୍, ଏମିତି ହଠାତ୍ ଧାଇଁ ଧାଇଁ ବାହାରକୁ ଚାଲି ଆସିଲେ ଯେ ? କ'ଣ ହେଲା''? ନିଜର ଦୁର୍ବଳତାକୁ ଲୁଚାଇବାକୁ ଯାଇ ମିହିର୍ କହିଲେ- ନାହିଁ ତ, ଟିକିଏ କ୍ଳାନ୍ତ ଲାଗିଲା । ବାହାରର ଶୁଦ୍ଧ ପବନ ଟିକିଏ ନପାଇଲେ ମଣିଷ ରୁଦ୍ଧି ହୋଇଯାଏ'' ରମୀୟ ବାବୁ ହସିଲେ ଏବଂ ପୁଣି ରୁମ୍ ଭିତରକୁ ଚାଲିଯାଇ କାମରେ ମନ ଦେଲେ ।

ପୋଡ଼ା ସିଗାରେଟ୍‌ଟା ବାହାରେ ଫିଙ୍ଗି ଦେଇ ତାଙ୍କ ପଛେ ପଛେ ମିହିର ଗଲେ ନିଜ ରୁମ୍ ଭିତରକୁ । ଝରକା ଆଡ଼େ ଚାହିଁଲେ । ୱାଚ ମ୍ୟାନ୍‌କୁ ଡାକି ବାହାରର ଲାଇଟ୍‌ଟା ଦେବା ପାଇଁ କହିଲେ । ଝରକା ପାଖରେ କିଛିନାହିଁ- କୌଣସି ମଣିଷ ବା କୌଣସି ଛାୟା ।

ସେଦିନର କାମ ସାରି ଘରକୁ ଫେରିଲେ ମିହିର୍ । କିନ୍ତୁ ଶେଯରେ ପଡ଼ିଲେ ସତ ହେଲେ ତାଙ୍କୁ ସାରାରାତି ନିଦ ହେଲାନାହିଁ । ମନେ ମନେ ଭାବିଲେ ପ୍ରକୃତରେ ତୋଫାନା ପ୍ରତି ସେ ଅନ୍ୟାୟ କରିଛନ୍ତି । ତା'ର ବଂଚିବାର ସୁଖ ପଥକୁ ସବୁଆଡୁ ସେ ଅବରୋଧ କରିଛନ୍ତି । ଏପରି କରିବା ହୁଏତ ଉଚିତ୍ ନଥିଲା ।

ପରଦିନ ଅଫିସ୍‌ର କାମ ସରିବା ବେଳକୁ ପୁଣି ଘନେଇ ଆସିଲା ସେହି ଅଭିଶପ୍ତ ମିହିର ଜୀବନର ସଂଧ୍ୟା । ସଂଧ୍ୟା ହେବା ସଂଗେ ସଂଗେ ତୋଫାନା ଆସି ଝରକା ପାଖେ ଠିଆହେଲା । କାଚର ଝମ୍‌ଝମ୍ ଶବ୍ଦରେ ପୁଣି ମିହିରର ଛାତି ଥରିବାକୁ ଲାଗିଲା । ଏଥର, ଘରସାରା ଟୋପାଟୋପା ରକ୍ତ, ଜୀଅନ୍ତା କଟାମଣିଷର ଲାଲ୍ ରକ୍ତ । ମିହିର ଭୟ ଓ ଆଶଂକାରେ ଦୌଡ଼ି ଆସିଲେ ବାହାରକୁ । ଆଉ ଲୁଚେଇ ପାରିଲେନି । ସବୁ କହିଦେଲେ ରମୀୟ ବାବୁଙ୍କୁ । ସବୁଶୁଣି ରମୀୟ ବାବୁ ନିର୍ବାକ୍ ହୋଇଗଲେ । ଏହା କ'ଣ ସମ୍ଭବ ହୋଇପାରେ ।

ସ୍ଥାନୀୟ ସ୍ୱାସ୍ଥ୍ୟ ଭଲ ରହୁନାହିଁ ବୋଲି ବାହାନା ଦେଖାଇ ମିହିର ସେଠାରୁ ଟ୍ରାନ୍ସଫର ମାଗି ପାଞ୍ଚ କିଲୋମିଟର ଦୂରରେ ଥିବା ଅଫିସ୍‌କୁ ଯାଇ କାର୍ଯ୍ୟରେ ଯୋଗଦେଲେଣି । ଅନେକ ଦିନ ହେଲାଣି ଏ ଅଫିସ୍‌କୁ ଆସିବାର । ନୂଆ ଅଫିସ୍‌କୁ ଆସିବା ପରେ ମିହିରଙ୍କର ଆଉ ଭୟ କରିବାର କାରଣ କିଛି ନାହିଁ । ଦି'ମାସ ହେବ ସବୁ ସୁରୁଖୁରୁରେ ଚାଲିଛି । କୌଣସି ଅସୁବିଧା ନାହିଁ ।

ଏହି ଅଫିସ୍‌ରେ ନାଇଟ୍ ୱାଚ୍ ମ୍ୟାନ୍‌ର ରିଟାର୍ଡ ପରେ ଆଉ କେହି ଏଯାଏ ନିଯୁକ୍ତି ପାଇନାହାନ୍ତି । ଅଫିସ୍ ପିଅନ ବେଳେବେଳେ ରାତିରେ ଅଫିସ୍ ଜଗେ । ଆଉ ବେଳେବେଳେ ପାଖରେ ଥିବା ତା'ଗାଁକୁ ଚାଲିଯାଏ । ଅଫିସ୍‌କୁ ଲାଗି ଏଠି ମଧ୍ୟ ମିହିର୍‌ର ବସାଘର ।

ସେଦିନ ଅସରାଏ ବର୍ଷାହୋଇ ଛାଡ଼ି ଯାଇଥାଏ । ଘୁମନ୍ତ ଆକାଶରେ ଧାଡ଼ିବାନ୍ଧି ବାଦଲସବୁ ପଟୁଆରରେ ଆଗକୁ ଚାଲିଥାନ୍ତି । ସେଦିନ ରାତିରେ ପିଅନ ରମ୍‌ଜାନ୍ ଗାଁକୁ ନଯାଇ ନାଇଟ୍ ୱାଚ୍‌ମ୍ୟାନ୍ ରୁମ୍‌ରେ ଶୋଇଥାଏ ।

ଠିକ୍ ରାତି ବାରଟା- ମିହିର ହଠାତ୍ ଶୁଣିବାକୁ ପାଇଲେ ଚୁଡ଼ିର ଝମ୍ ଝମ୍ ଶବ୍ଦ । ସେ ଭୟଭୀତ ହୋଇ ରମ୍‌ଜନ୍‌କୁ ଡାକ ପକାଇଲେ । ନିଦରୁ ଉଠି ରମଜନ୍ ବାବୁଙ୍କ ପାଖରେ ହାଜର ହେଲା । ସବୁକଥା ଶୁଣି ସେ କହିଲା- ''ନାହିଁତ ବାବୁ କିଛି ବି ଶବ୍ଦ ମୁଁ ଶୁଣିନି'' । ମିହିର କହିଲେ- ହେଇ ଶୁଣ୍, ଶୁଣି ପାରୁନୁ ? କାଚର ଝଣ୍ ଝଣ୍ ଶବ୍ଦ ତୁ ଶୁଣି ପାରୁନୁ ? ରମଜନ୍ କହିଲା ''ନା, ବାବୁ ମତେ କିଛି ତ ଶୁଭୁନି । ତମେ ବାବୁ ସ୍ୱପ୍ନ ଦେଖୁଥିବ ।'' ମିହିର୍ କହିଲେ ''ଧେତ୍ .... ତୁ ଯା, କିନ୍ତୁ ଶୋଇନପଡ଼ି ଟିକେ ଚେଇଁଥିବୁ ।'' ରମଜନ୍ ପୁଣି ୱାଚ୍‌ମ୍ୟାନ୍‌ର ଘରଭିତରକୁ ଚାଲିଗଲା ।

ମିହିର ଶେଯରେ ପଡ଼ି ଶୋଇବାକୁ ଚେଷ୍ଟାକଲେ । ରୁମ୍‌ର ଲାଇଟ୍ ଜଳୁଥିଲା । ପ୍ରାୟ ରାତି ଗୋଟାଏ । ରମଜନ୍ ବୋଧହୁଏ ଶୋଇପଡ଼ିଲାଣି । ନାଇଟ୍ ୱାଚ୍‌ମ୍ୟାନ ରୁମ୍‌ର ଲାଇଟ୍ ଲିଭି ଗଲାଣି । କିନ୍ତୁ ବତୀ ଖୁଣ୍ଟର ଆଲୁଅରେ ତା' ରୁମ୍‌ର କବାଟ ଉପରେ ପ୍ରାୟ ସ୍ପଷ୍ଟ ଆଲୁଅ ପଡ଼େ । ମିହିରଙ୍କ ରୁମ୍ ଭିତରୁ ଝରକା ବାଟେ ପରିଷ୍କାର ଭାବରେ ୱାଚ୍ ମ୍ୟାନ୍‌ର କବାଟ ଖୋଲା ଅଛି କି ବନ୍ଦ ଅଛି ଜଣାପଡ଼େ । ମିହିର ଦେଖିଲେ ଭିତରୁ ରମଜନ୍ କବାଟ ବନ୍ଦ କରିଛି । ବୋଧହୁଏ ଶୋଇ ଗଲାଣି । ଗଧଟା ! ଦିନ ଦି'ପହରେ ବି ଦିନେ ଦିନେ ଅଫିସ୍ ବାରଣ୍ଡାରେ ବସି ଘୁଙ୍ଗୁଡ଼ିମାରେ । କୋଉ କାମର ନୁହଁ । ମନେ ମନେ ମିହିର ଭାବିଲେ ଗୋଟାଏ ପିଅନ ହୋଇ ଯାହାହେଉ ଶାନ୍ତିରେ ସେ ଶୋଇପାରୁଛି । କିନ୍ତୁ ଶୋଇବା ତ ଦୂରର କଥା, ସେ ଶାନ୍ତିରେ ନିଃଶ୍ୱାସ ମଧ୍ୟ ମାରି ପାରୁନାହାନ୍ତି ।

ଭୟରେ ଛାତିଟା ଧଡ଼ପଡ଼ ହେଉଛି । ସେ ଖଟ ଉପରେ ନିର୍ବାକ ହୋଇ ବସି ରହିଛନ୍ତି । ହଠାତ୍ ଦେଖିଲେ ୱାଚ ମ୍ୟାନ୍‌ର କବାଟ ପାଖରୁ ଗୋଟିଏ ଖୁବ୍ ଉଜ୍ଜ୍ୱଳ ଆଲୋକ ତାଙ୍କ ବେଡ୍ ରୁମ୍ ଭିତରେ ପ୍ରବେଶ କଲା ଏବଂ ଗୋଟିଏ ଗୋଲାକାର ଅଗ୍ନିପିଣ୍ଡୁଳା ପରି ବେଡ୍ ଚାରିପାଖେ ଘୁରିବାକୁ ଆରମ୍ଭ କଲା । ମିହିର ଦେଖିଲେ ସେଇ ଗୋଲାକାର ପିଣ୍ଡ ଭିତରୁ ଦୁଇଟି ଭୟଙ୍କର ହାତ ତାଙ୍କ ଗଳା ଆଡ଼କୁ ଲମ୍ବି ଆସିଲା । ଓଃ, ବେକରେ ଅସହ୍ୟ ବେଦନା.... ଚେଷ୍ଟା କରି ମଧ୍ୟ ମିହିର ଆଉ ନିଃଶ୍ୱାସ ନେଇ ପାରୁନାହାନ୍ତି । ସବୁଆଡ଼ ଅନ୍ଧାର.....

ଭୟଙ୍କର ଏକ ଚିତ୍କାର ଶୁଣି ପିଅନ ଧାଇଁ ଆସିଲା । ଆଖିକୁ ସେ ବିଶ୍ୱାସ କରିପାରିଲାନି । ମିହିର ବାବୁଙ୍କର ମର ଶରୀର ତଳେ ଲୋଟିପଡ଼ିଥିଲା । ଏହା କିପରି ଘଟିଲା ? କାହିଁକି ଘଟିଲା ? କିଏ ଏ ସବୁ ଘଟାଇଲା ? ପିଅନ ବେଡ୍ ରୁମ୍‌ର ଏପାଖ ସେପାଖ, ସବୁ କବାଟ ଦେଖିଲା କୌଣସିଟା ଖୋଲାନଥିଲା ।

ପୋଲିସ୍ ଇନିସ୍‌ପେକ୍ଟର ଯଥା ସମୟରେ ଆସି ତଦନ୍ତ ଆରମ୍ଭ କଲେ । ହତ୍ୟାକାରୀ କୌଣସି ପ୍ରମାଣ ଛାଡ଼ି ଯାଇନଥିଲା, ତଥାପି ମିହିର୍‌ଙ୍କ ଡ୍ର- ଭିତରୁ ଖଣ୍ଡିଏ ଡାଏରୀ ମିଳିଲା । ଅବଶ୍ୟ ଡାଏରୀଟି ତାଙ୍କର ନଥିଲା । ସେଇଟି ଥିଲା ତୋଫାନାର ହାତଲେଖା ଡାଏରୀ । ଡାଏରୀଟିକୁ ଇନିସ୍‌ପେକ୍ଟର ବିଜୟ ମହାନ୍ତି ପଢ଼ିବାକୁ ଆରମ୍ଭ କରି ସମସ୍ତ ତଥ୍ୟ ଜାଣିପାରିଲେ ।

ତୋଫାନା ଥିଲେ ଜଣେ ସରକାରୀ କର୍ମଚାରୀ । ବହୁ ବାଧାବିଘ୍ନ ସତ୍ୱେ ନିଜର ନିଷ୍ଠା ଓ କର୍ତ୍ତବ୍ୟ ବଳରେ ସେ ଉଚ୍ଚପଦକୁ ଉଠିପାରିଥିଲେ । କିନ୍ତୁ ସେହି ପଦରେ ନିଜ ପ୍ରେମିକୁ ରଖିବା ପାଇଁ ସବୁ ପ୍ରକାର ଷଡ଼ଯନ୍ତ୍ର କରିଥିଲେ ମିହିର୍ । କେତେଜଣ ତୋଷାମୋଦକାରୀଙ୍କୁ ନେଇ ଶେଷରେ ମିହିର୍ ସଫଳତା ହାସଲ୍ କରିଥିଲେ । ଅଫିସ୍‌ରେ ଚାଲିଥିବା ପ୍ରିୟାପ୍ରୀତି ତୋଷଣକୁ ତୋଫାନା ସହ୍ୟ କରିନପାରି, ଶେଷରେ ଦିନେ ଆତ୍ମହତ୍ୟା କଲା । କାରଣ ମିହିର୍‌ର ଦୁର୍ନୀତି ଓ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ମଧ ଅନ୍ୟମାନଙ୍କ କୂଟଚକ୍ରାନ୍ତ ସମ୍ମୁଖରେ ସେ ହାରିଯାଇଥିଲା । ସେ ଏକେଲା ବା କରିଥାନ୍ତା କ'ଣ ?

ମିହିରବାବୁଙ୍କ ମୃତ୍ୟୁପରେ ରାତିରେ ଡିଉଟି କରିବାକୁ ନୂଆ ଦରଓ୍ୱାନ୍‌ଟା ଭାରି ଡରେ । ରାତି ହେଲେ ତା' ମନଭିତରେ ଅନ୍ଧାର ଘୋଟି ଆସି ବିଜୁଳି ଘଡ଼ଘଡ଼ିର ଭୟଙ୍କର ଶବ୍ଦ ଶୁଣାଯାଏ । ପିଅନଟା ତାକୁ ପ୍ରଥମ ଦିନରୁ ହିଁ ସବୁ କହିଛି ।

ସେଦିନ ସଂଧ୍ୟାରେ ଅଫିସ୍‌କୁ ନୂଆ ଅଫିସର୍ ଆସି କାମରେ ଯୋଗଦେଲେ । ସବୁକଥା ଦରଓ୍ୱାନ୍ ଠାରୁ ଶୁଣି ସେ ହସି ହସି କହିଲେ- ''ଭୂତ ପ୍ରେତ କିଛି ନଥାଏରେ । ମଣିଷ ମରିବା ପରେ ତା'ର ଶରୀର ଧ୍ୱଂସ ପାଇବା ସଂଗେ ସଂଗେ ମନ, ଆତ୍ମା ଓ ଇଚ୍ଛା- ସବୁ କିଛି ମଶାଣି ଭୂଇଁର ଲେଲିହାନ୍ ଅଗ୍ନିଶିଖା ଗର୍ଭରେ ବିଲୀନ ହୋଇଯାଏ । ଭୂତ କୋଉଠୁ ଆସିବ ?

''ବାବୁ ! ତେବେ ଏ ଘଟଣା କିପରି ଘଟିଲା'' ?-ଓ୍ୱାଚ୍ ମ୍ୟାନ୍ ପଚାରିବାରୁ ସେ କହିଲେ- ''ବିବେକ ହିଁ ମଣିଷକୁ ସର୍ପ ରୂପରେ ଦଂଶନ କରେ । ତା'ର ଅନ୍ୟାୟ ଅତ୍ୟାଚାର ପାଇଁ ଶେଷରେ ସେ ନିଜେ ନିଜର କର୍ମଫଳ ହିଁ ଭୋଗ କରେ ''। କିନ୍ତୁ ବାବୁ ଯେତେ ଯାହା କହିଲେ ମଧ ଓ୍ୱାଚ୍ ମ୍ୟାନ୍ ତାଙ୍କ କଥାରେ ବିଶ୍ୱାସ କରେନାହିଁ । ମନେ ମନେ ଭାବେ ଭୂତ ନଥିଲେ ଡର ଲାଗନ୍ତା କାହିଁକି ?

# - ଏକାନ୍ତ ଆପଣାର -

ଅନୁ କବାଟ ଖୋଲି ହଠାତ୍ ଅନ୍ୟମନସ୍କ ହୋଇ ପଡ଼ିଲା । ଆଗନ୍ତୁକଙ୍କୁ ଗୋଡ଼ଠୁ ମୁଣ୍ଡଯାଏ ଥରେ ଚାହିଁ ଦେଲା ।

ତେଣେ ବାରଣ୍ଡାରେ ଆଳୁବାଇଗଣ ଅଧା କଟା ହୋଇ ପଡ଼ିଛି । ବାରିର କଖାରୁଟା ଦି'ଫାଳ କରିବାକୁ ପଡ଼ିବ । ପଡ଼ିଶା ଘରକୁ ଖଣ୍ଡେ ନ ଦେଲେ ନଚଳେ ।

ଶୋଭା ଭାରି ମୁଖରୀ- ମୁହେଁ ମୁହେଁ କହିବେ- ବାରି ଜିନିଷ ଏକା ଏକା ଖାଉଛ ପେଟ କାଟୁନି ? ସେଦିନ କଥା ଅନୁ ଏପର୍ଯ୍ୟନ୍ତ ଭୁଲିନି । ବାରି କାକୁଡ଼ିରୁ ଗୋଟାଏ ଦେଇ ନଥିଲା ବୋଲି ଯାହା ସବୁ ଶୁଣିବାକୁ ପଡ଼ିଥିଲା ।

ବଜାରରେ ଏଇନେ ଯାହା ଦର । ମଣିଷ ବଂଚିବା ମୁସ୍କିଲ । ସେଥିରେ ପୁଣି ଚାରି ଚାରିଟା ପିଲା । ବଡ଼ ପୁଅ ଇଞ୍ଜିନିୟରିଂ ପଢ଼େ । ତା' ତଳ ବି.ଏସ୍.ସି. । ସଭା ସାନ ପୁଅର ସପ୍ତମ ଶ୍ରେଣୀ । ଝିଅ ଗୀତା ଆଇ.ଏ.ପାଶ୍ କରି ତିନିବର୍ଷ ହେଲା ଘରେ ବସିଛି ।

ବର ଖୋଜି ଖୋଜି ଅନୁ ହାଲିଆ ହେଲାଣି । ଯାହା ବା ଦିଆ ନିଆ କରି ଝିଅଟିକୁ ଉଠାଇ ଦିଅନ୍ତା । ଏଣେ ମାରୁତି କାର୍‌ବାଲା ଯାଇ ବର ଘରେ ହାଜର୍ । ଅଲାଜୁକ ବରଗୁଡ଼ାକ ପାଞ୍ଚଦଶ ହଜାର ଟଙ୍କା ପାଇଁ ମଧ୍ୟ ଫେରି ଯାଉଛନ୍ତି । ଭଲ ଗୁଣର ଝିଅ ତାଙ୍କୁ ଦରକାର ନାହିଁ ।

ବଂଧୁଙ୍କୁ କବାଟ ଖୋଲିବା ପରେ ଅନୁ ନମସ୍କାର ଟିଏ କରିଛି କିନ୍ତୁ ବେଣୁ ମାଧବଙ୍କର ସେଥିପ୍ରତି ଲକ୍ଷ୍ୟ ନାହିଁ । ତେଣୁ ପ୍ରତିନମସ୍କାରଟିଏ ମିଳିନି ଅନୁକୁ । ଆଟାଚିଟି ତଳେ ଥୋଇ ବଂଧୁ ପଚାରିଲେ "କ'ଣ ସବୁ ଭଲତ ?" ଉତ୍ତରରେ ଅନୁ କିଛି କହିଲା ନାହିଁ । ବାଧ୍ୟରେ ବେଣୁଧର ବାରଣ୍ଡାରେ ପଡ଼ିଥିବା କାଠ ଚେୟାର୍‌ଟିରେ ବସିଲେ । କିଛିକ୍ଷଣର ନିରବତା, ବେଣୁ ମାଧବଙ୍କ ପାଇଁ ଅସହ୍ୟ ବେଦନା ।

ଚାହା କପ୍‌ଟିଏ ଆସିଲା । ସ୍ୱାଦ ଭିତରୁ ମିଠାଟି କେବଳ ବାରି ହେଉଥାଏ । ଚାହାପତି ଆଉ କ୍ଷୀରର ପରିମାଣ ଖୁବ୍ କମ୍ । କ୍ଷୀର ପ୍ରାୟ ପଡ଼ିନି କହିଲେ ଚଳେ । ଚା କପ୍‌ଟି ଓଠରେ ଲଗାଉ ଲଗାଉ ବେଣୁ ମାଧବ ଘରର ଚାରିଆଡ଼କୁ ଦୃଷ୍ଟିଦେଲେ ।

ଆସବାବ ପତ୍ରରେ କିଛି ପରିବର୍ତ୍ତନ ନାହିଁ । ପନ୍ଦର ବର୍ଷ ତଳର, ସେହି ପ୍ଲାଷ୍ଟିକ୍ ସୋଫା । ତାର ସବୁ ଛିଣ୍ଡି ଗଲାଣି । କାଠ ଖଟ ଖଣ୍ଡିକ ଉପରେ ସେଇ ପୁରୁଣା ରଙ୍ଗଛଡ଼ା ଚାଦର । ଏମିତି ରଙ୍ଗଛଡ଼ା ଜିନିଷ ବ୍ୟତୀତ ସେ ଏଘରେ ଗାଢ଼ ରଙ୍ଗ କେବେ ଦେଖିନାହାନ୍ତି । ନା, ହୁଏତ ନୂଆ ଚାଦର୍ ପଡ଼ିବାବେଳେ ସେ ଆସି ନାହାନ୍ତି । ବାକି ରହିଲା କାଠ ଚେୟାର ଦି'ଖଣ୍ଡି । ସେ ଦୁଇଟି ସତେ ଯେମିତି ବେଣୁ ମାଧବଙ୍କୁ ଚାହିଁ ଉପହାସ କରୁଛନ୍ତି । କେଜାଣି କାହିଁକି, ନିଜକୁ ଅପରାଧିପରି ମନେ ହେଲା ତାଙ୍କର ।

ଏଭିତରେ ଆଉ କିଛିକ୍ଷଣ ପାଇଁ ନିରବତା ତା'ର ଅସ୍ତିତ୍ୱ ବିସ୍ତାର କରିସାରିଥିଲା । ତଳକୁ ମୁହଁପୋତି ଅନୁ ବସିଥିଲା । ଅପଲକ ନେତ୍ରରେ ବେଣୁ ମାଧବ ତାକୁ ଚାହିଁ ରହିଥିଲେ । ଅତୀତର ସ୍ମୃତି ସବୁ ଚଳଚିତ୍ରର ପର୍ଦ୍ଦାପରି ତାଙ୍କ ଆଖି ଆଗରେ ଭାସି ଉଠୁଥାଏ ।

ସେ ଅନେକ ଦିନ ତଳର କଥା । ଅନୁର ମା' ଶ୍ରୀଲତା ସେତେବେଳେ ବଂଚିଥିଲେ । ସେ ଥିଲେ ସ୍ନେହମୟୀ ଜନନୀର ପ୍ରକୃତ ପ୍ରତିମୂର୍ତ୍ତିଟିଏ । ବେଣୁ ମାଧବଙ୍କୁ ପଅପରି ପାଖରେ ରହି ମଣିଷ କରିଥିଲେ । ତାଙ୍କରି ପାଖରେ ରହି ବେଣୁମାଧବ ଉଚ୍ଚ ଶିକ୍ଷିତ ହୋଇପାରିଥିଲେ । ଶେଷରେ ଚାକିରୀ ପାଇଁ ଶ୍ରୀଲତାଙ୍କ ଠାରୁ ବେଣୁମାଧବଙ୍କୁ ଦୂରେଇ ଯିବାକୁ ପଡ଼ିଥିଲା । ଚକ ପରି ସମୟ ଗଡ଼ିବାକୁ ଲାଗିଲା ।

ଜମିଦାର ନିରଞ୍ଜ ଛୋଟରାୟଙ୍କ ମୃତ୍ୟୁ ପରେ ଆସିଥିବା ଭଲଦିନ ସବୁ ପଛକୁ ଫେରିଲେ । ବାକି ରହିଗଲା ଜୀବନର ଅସହାୟତା, ଅଂଧକାରର ଅଣନିଃଶ୍ୱାସୀ କୋଠରୀ, ଆଉ କେତେଟୋପା ତତଲା ଲୁହ । ଶ୍ରୀଲତାଙ୍କ ପାଇଁ ଜୀବନ ବିତାଇବା ଥିଲା ଶ୍ମଶାନର **ଅଗ୍ନିଶିଖା** । ସମୟ ଚାଲିଲା ଆଗକୁ..... ନିରଞ୍ଜ ଛୋଟରାୟଙ୍କର ସବୁ ସମ୍ପତ୍ତି ତାଙ୍କ ପ୍ରଥମ ସ୍ତ୍ରୀ ଶୋଭାଙ୍କ ନାମରେ ଥିବାରୁ ଶ୍ରୀଲତାଙ୍କୁ ସବୁକିଛି ହରାଇବାକୁ ପଡ଼ିଲା । ସେ ଦାରିଦ୍ର୍ୟର କଷା ଘାତରେ ଅହରହ ଯନ୍ତ୍ରଣା ଭୋଗିଲେ । ସେତେବେଳକୁ ଅନୁ ଥିଲା ମାତ୍ର ପନ୍ଦର ବର୍ଷର ।

ବଜାରରେ ଡାଲି, ଚାଉଳ, ତେଲଲୁଣର ଦର କେବେ ବଢ଼େ, କେବେ କମେ। କିନ୍ତୁ ବରବଜାରରେ ଦର ବଢ଼େ ସିନା କମିବାର କେବେ ପ୍ରଶ୍ନ ଉଠେନାହିଁ। ଶ୍ରୀଲତାଙ୍କ ମନ ଭିତରେ ଚିନ୍ତାର ପାହାଡ଼ ଭାଙ୍ଗି ପଡ଼ିଥାଏ। ନାନା ମାନସିକ ଦୁଶ୍ଚିନ୍ତା ନେଇ ସେ ରୋଗ ଶଯ୍ୟାରେ ପଡ଼ିଥାନ୍ତି। ବେଣୁ ମାଧବ ତାଙ୍କୁ ଦେଖିବା ପାଇଁ ଆସିଥାନ୍ତି ଗାଁକୁ। ଶେଯ ପାଖରେ ବସି ସେ ଶ୍ରୀଲତାଙ୍କ ପାଦ ଆଉଁସି ଦେଉଥାନ୍ତି।

ସେଦିନ ବେଣୁ ମାଧବ ଆଗରେ ଶ୍ରୀଲତା ଗୋଟିଏ ଅନୁରୋଧ ବାଢ଼ି ବସିଥିଲେ। ସଜ ଗୋଲାପ ଫୁଲଟିକୁ ତୋଳିନେବା ପାଇଁ। ସେ ବାରମ୍ବାର ପ୍ରାର୍ଥନା କରିଥିଲେ ବେଣୁ ମାଧବଙ୍କୁ।

ଅନୁର ଚନ୍ଦ୍ରପରି ସୁନ୍ଦର ଗୋଲାକାର ମୁହଁଟିରେ ପଦ୍ମଫୁଲ ପରି ଢ଼ଳଢ଼ଳ ଆଖିଦୁଇଟି। କି ସୁନ୍ଦର ! ସେ ଦୁଇଟି ସତେ ଯେମିତି ପରାଜୟତାକୁ ଅସ୍ୱୀକାର କରୁଛି। ନିର୍ବାକ ହୋଇ ସେ ଚାହିଁ ରହିଥିଲା ବେଣୁ ମାଧବଙ୍କ ମୁହଁକୁ।

ଶ୍ରୀଲତାଙ୍କ ଆଶା, ଅନୁର ସ୍ୱପ୍ନ- ଏସବୁକୁ ପଦାଘାତ କରିଥିଲେ ବେଣୁ ମାଧବ। ଶ୍ରୀଲତାଙ୍କୁ କୌଣସି ଉତ୍ତର ନଦେଇ ସେ ଫେରିଯାଇଥିଲେ କର୍ମକ୍ଷେତ୍ରକୁ।

ଅନୁକୁ ବିବାହ କରି ସେ କ'ଣ ପାଇବେ ? ଏଇ ଭଲ ପାଇବାର ଅଳୀକ ସୁଖ ଟିକକ ? ପ୍ରେମ ? ସ୍ନେହ ? ... ଏସବୁ ଥିଲା ବେଣୁ ମାଧବଙ୍କ ପକ୍ଷେ ଗୋଟାଏ ଗୋଟାଏ ଉଦ୍‌ଭଟ ନାଟକ। ତା'ଛଡ଼ା ଆଉ କିଛି ନୁହେଁ।

ଦିନ କାହାରିକୁ ଅପେକ୍ଷା କରେନା' ଗର୍ବ ଓ ଅହଂକାରକୁ ସମୁଚିତ ଶିକ୍ଷା ଦେବାପାଇଁ ସେ ଖୋଜେ ସୁଯୋଗ।

ଗୋଟାଏ ସହରୀ ବାଘୁଣୀର ଶିକାର ହେଲେ ବେଣୁ ମାଧବ। ମନମତାଣିଆ କଥା କହି, ଯୌତୁକର ଲୋଭ ଦେଖାଇ ସେ ତାଙ୍କୁ ଅତି ଆପଣାର କରିନେଲା। ବେଦୀରେ ନୁହେଁ, ମନ୍ଦିରରେ ନୁହେଁ, ବିବାହ ହେଲା ଜଣେ ଓକିଲଙ୍କ ଘରେ। ସ୍ତ୍ରୀ ସ୍ମିତା ଜଣେ ନୃତ୍ୟଶିଳ୍ପୀ।

ବେଣୁ ମାଧବଙ୍କ ଜୀବନଯେ କିଛି ଦିନ ସୁଖରେ ନ କଟିଛି ତା ନୁହେଁ, କିନ୍ତୁ ଦୁଃଖର ବିଷୟ, ସୁଖ ଦିନର ଗୋଡ଼ସବୁ ଖୁବ୍‌ଯୋର୍‌ରେ ଦୌଡ଼ି ପାରନ୍ତି ହେଲେ ଦୁଃଖ

ଦିନର ଗୋଡ଼ମାନେ ସବୁବେଳେ ପଛୁଆ । କିଛିଦିନ ପରେ ନୃତ୍ୟ ଗବେଷଣା ପାଇଁ ସ୍ନିଗ୍ଧା ଗଲେ ଲଣ୍ଡନ । ସେଠାରୁ ଦିନାକେତେ ଚିଠିପତ୍ର ଖଣ୍ଡେ ଅଧେ ଆସିଲା । ତା'ପରେ ଚିଠିତ ଦୂରର କଥା, ସ୍ନିଗ୍ଧାଙ୍କ ବିଷୟରେ କୌଣସି ଖବର ମଧ୍ୟ ବେଣୁ ମାଧବ ପାଇଲେ ନାହିଁ ।

କିଏ କହିଲା ସ୍ନିଗ୍ଧା ଗୋଟିଏ ବିଲାତି ଲୋକକୁ ବାହାହେଲେଣି, କିଏ କହିଲା ସେ ଲଣ୍ଡନରେ ନାହାନ୍ତି । ପୁଣି କିଏ କିଏ ଗୁଜବ ଉଠାଇଲେ, ସ୍ନିଗ୍ଧା କେବେଠୁଁ ମରିଗଲେଣି । ଏଣିକି ଚିଠିର ଉତ୍ତର ପ୍ରତ୍ୟୁତ୍ତର ସବୁବନ୍ଦ ।

ଅନୁତାପରେ ବେଣୁ ମାଧବ ଜଳୁଥାନ୍ତି । ଛାତି ଭିତରେ ଦୁଃଖର ପାହାଡ଼ ଭାଙ୍ଗି ପଡୁଥାଏ । ଦିନେ ଅନୁକୁ ଦେଖିବା ଉଦ୍ଦେଶ୍ୟରେ ଗାଁରେ ପହଁଞ୍ଚିଲେ ।

ଅଭିମାନର ନିଆଁଧୂଆଁ ତଳେ ଅନୁ ଏବେ ବି ବଂଚିଛି । କିନ୍ତୁ କେଉଁ ଆଶାନେଇ ? କିଏ ଜାଣେ ସେ କଥା ? ଗାଁ ସାରା ସେଦିନ ଚୁପୁରୁଚାପର ଫୁସୁରୁଫାସର । ଲୋକେ କୁହା କୁହି ହେଲେ- ଭଲହେଲା, ବେଣୁ ମାଧବଟା ଆସିଗଲା । ଅନୁଟା କିଛି ନହେଲେ ତ କୂଳରେ ଲାଗିଯିବ ।

ଆଉ କିଏ କିଏ କହିଲେ ''ଏତେଦିନେ ବୁଦ୍ଧି ପଶିଲା ବେଣୁର । ସେଇକଥା କଲା, ଏତେଦିନ କୁଆଡ଼େ ଥିଲା ?

ଅନୁ ଶୁଣିଲା ବେଣୁ ମାଧବ ଫେରିଛି । ତା'ଦେହରେ ବିଦ୍ୟୁତ୍ ଖେଳିଗଲା । ତା'ମାଆଙ୍କ ଶେଷ କଥା କେତେପଦ ବାରମ୍ବାର ତା'କାନରେ ବାଜିଲା । ସେଦିନ ଥିଲା ଅମାବାସ୍ୟା ଘନଅନ୍ଧକାର । ସେଇ ଭୟଙ୍କର କାଳରାତିକୁ ଅନୁ ଏବେ ବି ଭୁଲିନି ।

ବେଣୁ ହାତରେ ଅନୁର ହାତ ଦେଇ ମା' ଅନ୍ତତଃ ଶାନ୍ତିରେ ମରିପାରିଥାନ୍ତେ । କିନ୍ତୁ ବେଣୁ କ'ଣ ମଣିଷ ? ସାକ୍ଷାତ୍ ପଥର ମୂର୍ତ୍ତିଟାଏ । ଅନୁର ସବୁ ସ୍ୱପ୍ନକୁ ଭାଙ୍ଗି ଚୁରମାର୍ କରିଦେଲା ସିଏ ।

ସେଦିନ ରାତି । ଅନୁଘରେ ବେଣୁ ମାଧବ ଅତିଥି ହେଲା । କିପରି ବା ଅନୁ ମନା କରିଦେବ ତାକୁ ? ଖାଇବା ପରଷି ଦେଇ ଅନୁ ତା ଶୋଇବା ଘରର କିଳିଣୀ ଭିତର ପଟୁ ବନ୍ଦକଲା । ବାହାର ଘରେ ବେଣୁ ମାଧବ ଖାଇସାରି ଶୋଇବାକୁ ଚେଷ୍ଟାକଲା ।

ଠିକ୍ ରାତିଅଧ । ଗାଁ ମଶାଣୀ ଭୂଇଁରୁ ଶ୍ୱାନ ଶୃଗାଳଙ୍କର ଭୟଙ୍କର ସ୍ୱର ଶୁଭୁଥାଏ । ଅନୁର ଶୋଇବା ଘର କବାଟରେ କିଏ ଜଣେ ହାତ ମାରିଲା । କିଛି ସମୟ ଖୁବ୍ ଜୋର୍‌ରେ ଠକ୍ ଠକ୍ ଶବ୍ଦ ହେଲା । କିଏ ଜଣେ କବାଟ ଖୋଲିବା ପାଇଁ ଅସ୍ପଷ୍ଟ କଣ୍ଠରେ ଅନୁରୋଧ କରିବାର ଶୁଣାଗଲା ।

ଅନୁ କାବଟ ପାଖକୁ ଯାଇ କାନ ଡେରି ସ୍ପଷ୍ଟ ଜାଣିପାରିଲା ଯେ ବେଣୁ ମାଧବ ତାକୁ ଡାକୁଛି ।

କବାଟ ସେ ପାଖେ ବେଣୁର ପ୍ରେମ ଜର୍ଜରିତ ବିଦଗ୍ଧ ହୃଦୟର କରୁଣ ମିନତି । ଏପାଖେ ଅସହାୟ ଯୁବତୀ ମନରେ ଉପସ୍ଥିତ ଅକୁହା ବେଦନା, ଦେହରେ ଅଜଣା ଶୀହରଣ ।

ତଥାପି ଅନୁ ଯୌବନର ପରାଜୟ ମାନିବାକୁ ରାଜି ନୁହେଁ । ସେ ହୋଇପାରେ ନାରୀ । କିନ୍ତୁ ସେ କେବେ ଅବଳା ନୁହେଁ । ପୁରୁଷ ପରି ତା'ର ମଧ ସ୍ୱାଧୀନତା ଅଛି । ମାନବିକ ଅଧିକାର ଅଛି ଆଉ ରୁଚିଅଛି ।

ନାରୀ ଚାହିଁଲେ ପୁରୁଷତ୍ୱକୁ ହତ୍ୟା କରିପାରିବ । ନା, ଯୌବନର ଅଗ୍ନିଦାହ ମଧ୍ୟରେ ପୋଡ଼ିଜଳି ପାଉଁଶ ହୋଇଗଲେ ବି ସେ ହାରିଯିବନି । କାହିଁକି ହାରିଯିବ ? କ'ଣ କେବଳ ନାରୀବୋଲି ?

ସିନ୍ଦୁରା ଫାଟିଲା । ସକାଳ ହେଲା । ନିରାଶରେ ବେଣୁ ଦାଣ୍ଡ ବଖରାକୁ ଫେରିଲା । ସକାଳେ ଦେଖିଲା ଅନୁ ନାହିଁ । ଅନୁ ରାତିରାତି ପଛ କବାଟ ଖୋଲି ଚାଲିଯାଇଥିଲା ତା' ଭଉଣୀ ଘରକୁ । ଭଉଣୀ କିମ୍ବା ଭିଣେଇ କେହି ଜୀବିତ ନଥିଲେ । ଚାରୋଟି ସନ୍ତାନ ବାପ ମା ଛେଉଣ୍ଡ ହୋଇ ପଡ଼ିରହିଥିଲେ ସେଇ ଗରିବ ଘରର ଚାରିକାନ୍ଥ ଭିତରେ ।

କାହା ଘରେ ଲୁଗା କାଚି, କାହା ଘରେ ବାସନ ମାଜି ଚାରୋଟି ପିଲାଙ୍କୁ ମଣିଷ କରିଛି ଅନୁ ।

ଏବେ ଗାଁରେ ଖଣ୍ଡିଏ ଡାଲିଚାଉଳ ଦୋକାନ । ସେମାନେ ଭଲରେ, ଚଳିଲେଣି ଅଭାବି ସଂସାରର ଅବସ୍ଥା ସୁଧୁରି ଗଲାଣି । କିନ୍ତୁ ଦୀର୍ଘ ଦିନ ତଳର ଗୋଟିଏ ଗୋଟିଏ ମୁହୂର୍ତ୍ତ ସେ ଏବେ ବି ପାଶୋରୀ ପାରିନି । ଏବେ ବି ତା'ମନରୁ ସେଦିନର ଘଟଣା ଗୁଡ଼ିକ ଲିଭି ଯାଇନି ।

ଏ ଭିତରେ ପନ୍ଦର ବର୍ଷ ବିତି ଗଲାଣି । ଆଜି ପରି ଅନେକଥର ଆସିଛି ବେଣୁ ମାଧବ । କିନ୍ତୁ ସେ ଆଜି ଯୌତୁକ ନେବା ପାଇଁ ଆସିନି, ଆସିଛି କିଛି ଦେବା ପାଇଁ । ହେଲେ କ'ଣ ହେବ, ଅନୁ ଆଜି ତା'ଠାରୁ କିଛି ମଧ୍ୟ ଗ୍ରହଣ କରିବାକୁ ରାଜିନୁହେଁ ।

କେମିତି ଗ୍ରହଣ କରିବ ସେ ? ସମାଜ ତାକୁ କ'ଣ କହିବ ? ବେଦୀ ଉପରେ ଦଶ ଦିଗପାଳଙ୍କୁ ସାକ୍ଷୀରଖି ସେ- ହୋଇଥାନ୍ତା ବେଣୁ ମାଧବର ସ୍ତ୍ରୀ- ତା'ର ଏକାନ୍ତ ଆପଣାର ।

ଆଜି ତ ସେ ସାତପର । ବେଣୁ ତା'ର କଣ ବୋଲି ସେ ଦୁନିଆକୁ ଜବାବ ଦେବ ? ଯାଚିଗୁଞ୍ଜି ବେଣୁ କିଛି ଦେଲେ ଅନୁ ଗ୍ରହଣ କରେନା । ସେ ଜବରଦସ୍ତ ସାନପୁଅ ହାତରେ ପଇସା ଧରେଇ ଦେଇଯାଏ ।

ବେଣୁର ବାପା ମା କେହି ନାହାନ୍ତି । ମାସକୁ ଦରମା ସାତହଜାର । ଏତେ ପଇସା ସେ କ'ଣ କରିବ ? କିଏ ଆଉ ଅଛି ଯେ ତାକୁ ଦେବ ?

ବେଣୁ ମାଧବ ଏମିତି ଅନୁଙ୍କୁ ଦେଖିବାକୁ କେବେକେବେ ଆସେ । ଆଖି ପୂରାଇ ତାକୁ ଦେଖେ ତା'ପ୍ରାଣ ଭରିଯାଏ, ମନହାଲ୍‌କା ଲାଗେ । ଯୌବନର ଫୁଲ ହଜି ଯିବାକୁ ବସିଲାଣି । ତଥାପି, ଏବେ ବି ଅନୁ ସଜ ଗୋଲାପ ଫୁଲପରି ସୁନ୍ଦର । ସେଦିନ ପରି ଲାଲ୍ ଶାଢ଼ୀ ତାକୁ ଆଜିବି ମାନେ । ଲାଲ୍ ସିନ୍ଦୁର ଟିପା ବି ସୁନ୍ଦର ଦିଶେ ଗୋରା ତକ ତକ ହାତରେ ମେଞ୍ଚା ମେଞ୍ଚା ଲାଲ୍ ଚୁଡ଼ି ଆଜି ବି ବେଣୁ ମାଧବର ହୃଦୟରେ ଶୀହରଣ ସୃଷ୍ଟିକରେ ।

ଅନୁ ଏବେ ସୁଦ୍ଧା କୁଆଁରୀ, କେଉଁ ଅଫେରା ରାଇଜର ରାଜକୁମାରକୁ ସତେ ଯେମିତି ସେ ଅନେକ ଆଶା ଅଭିଳାଷ ନେଇ ଚାହିଁ ରହିଛି ।

ଯିଏ ପଚାରିଲେ, ଅନୁ ତା'ନିଜ ବିଷୟରେ ନିରବ ରହେ । ପିଲାଙ୍କ କଥା ପଡ଼ିଲେ କହେ "ମୋର ଚାରୋଟି ପିଲା । ବଡ଼ ପୁଅ ଇଞ୍ଜିନିୟରିଂ ପଢୁଛି ଝିଅ ପାଇଁ ବରଖୋଜା ହେଉଛି ।"- ଶୁଣିଲେ କେହି ବିଶ୍ୱାସ କରିନ୍ତି ନାହିଁ । କାରଣ ଏବେବି ଅନୁ ତିରିଶି ବର୍ଷର ଏପାଖେ ଅଛି ବୋଲି ଲାଗେ ସିନା, ସେ ପାଖେ ନୁହେଁ ।

ବେଣୁ ମାଧବ ଚା'ପ୍ଲେଟ୍ ତଳେ ରଖି ଭାବୁଥିଲା- ଏମିତି ସୁନ୍ଦର ଜୀବନକୁ ପୋଡ଼ିଜାଳି ପାଉଁଶ କରିବାର କି ସୁଖ ପାଉଛି ଅନୁ ? ବେଣୁ ମାଧବର ଛାତିରେ କୋହ ଉଠେ, ଛାତି ଭିତରେ ସତେ ଯେମିତି ଝଡ଼ ତୋଫାନ ବହିଯାଏ । ସେ ଏବେବି ଅନୁକୁ ଭୁଲିପାରେନା ।

ଚୁପ୍‌ଚାପ୍ କାଠ ଚେୟାରଟି ଉପରେ ସେ ବସିଥାଏ । ସାମାନ୍ୟ ଭୁଲ୍ ପାଇଁ ଭଗବାନଙ୍କର ଏତେବଡ଼ ଦଣ୍ଡ ! ସେ କଳ୍ପନା ସୁଦ୍ଧା କରିନଥିଲା । ବେଣୁ ମାଧବ ଚାହିଁରହିଥିଲା ଅନୁର ମୁହଁଟିକୁ ।

ଏମିତି ଅନେକ ଦିନ ଗଡ଼ିଚାଲେ । ଅନୁ ପାଖକୁ ବେଣୁ ମାଧବ ଆସେ । ଅନୁ ଘରେ କୁଣିଆ ହୁଏ । ଦାଣ୍ଡ ବଖରାରେ ରାତି ବିତାଏ । ପ୍ରତିଥର ନିରାଶରେ ଫେରିଯାଏ । ସେଇଥିରେ ମଧ୍ୟ ତାର ଖୁସି ।

ଅନୁ ତାକୁ ଏବେବି ଏକାନ୍ତ ଆପଣାର ଲାଗେ । ଅନୁ ବଡ଼ ତିନିପିଲାଙ୍କୁ ସବୁକହିଛି । ସାନପୁଅ ପଚାରିଲେ କହେ, ''ଇଏ ମାମା ହେବେ ।''

○●○

# ଗୋଟିଏ ଫଟା ଖଣ୍ଡିଏ ଚିଠି

ଜୀବନରେ ଅନେକ ଝଡ଼ଝଞ୍ଜା ବହିଯାଇଛି । ସବୁ ସହି ସହି ଅନିନ୍ଦା ପଥର ପାଲଟିଛି । ଶ୍ରାବଣର ବାରିଧାରା ପରି କେବେ ଅବିଶ୍ରାନ୍ତ ଅଶ୍ରୁ ଝରାଇଛି ତ କେବେ ମୁହୂର୍ତ୍ତିକର ହସରେ ସେ ଆତ୍ମବିଭୋର ହୋଇ ପଡ଼ିଛି । ଜୀବନର ଚକକୁ ଟାଣି ଟାଣି ତଥାପି ସେ ଆଗକୁ ଚାଲିଛି ।

ଦୀର୍ଘ ପାଞ୍ଚ ବର୍ଷ ତଳର କଥା । ଅନିନ୍ଦା ଥିଲା ଅନିନ୍ଦ୍ୟ ସୁନ୍ଦରୀ । ନାଁ କୁ ଚାହିଁ ରୂପ ଗୁଣ, ସବୁ ଯେମିତି ଭରି ରହିଥିଲା ତା'ଠି । ସେଦିନ କଥା ତା'ର ମନେ ଅଛି ଜ୍ୟୋତିରଞ୍ଜନ ତାକୁ ଭଲପାଇ ବାହା ହୋଇଥିଲେ । ବଡ଼ଭାଇ ଶୁଭରଂଜନଙ୍କ ମତ ଥିଲା ଭିନ୍ନ । ସେ ସିଧା ସିଧା ଜ୍ୟୋତିକୁ କହିଦେଇଥିଲେ ତୁଯେବେ ଅନିନ୍ଦାକୁ ବିବାହ କରୁ ତେବେ ତୋର ଏ ଘରେ ସ୍ଥାନ ନାହିଁ । ଏସବୁ ଯୋଜନା ବଡ଼ ଭାଇଙ୍କର ନୁହେଁ, ବଡ଼ଭାଉଜଙ୍କର ଥିଲା । ଏକଥା ଜ୍ୟୋତି ଜାଣି ମଧ୍ୟ ନିରବ ରହିବାକୁ ବାଧ୍ୟ ହୋଇଥିଲେ । ଶେଷରେ ତାଙ୍କୁ ଘର ଛାଡ଼ିବାକୁ ହିଁ ପଡ଼ିଥିଲା । ନିର୍ମମ ଶୁଭରଞ୍ଜନ କେବେବି ଭାଇକୁ ଆଉ ଘରକୁ ଡାକିନାହାନ୍ତି । ସ୍ତ୍ରୀର କଥା ତାଙ୍କ ପାଇଁ ବେଦର ଗାର- କାହିଁକି କେଜାଣି ଜ୍ୟୋତି ବୁଝିପାରେନା ।

ମନର ଦୁଃଖ ମନ ଭିତରେ ଚପାଇ ରଖି ଜ୍ୟୋତି ଅନିନ୍ଦାକୁ ଆଣି ଗୋଟିଏ ଛୋଟ ଭଡ଼ା ଘରେ ରହିଲେ । ନିରାଶାର ଅଂଧକାର ଭିତରେ ଜୀବନ ଚକ ଗୁଡ଼ା ଭୟଙ୍କର ଶବ୍ଦ କରୁଥିଲେ ବେଳେବେଳେ ପୁଣି ବେଳେବେଳେ ଅଚଳ ଅବସ୍ଥାରେ ପଛକୁ ଫେରିପଡୁ ଥିଲେ । ପାଣି ପବନର ସୁଅ ଭିତରେ ଧକ୍କାଖାଇ ମଧ୍ୟ ଅନେକ ଆଶାରେ ଉଜ୍ଜ୍ୱଳ ଭବିଷ୍ୟତକୁ ଚାହିଁ ରହିଥିଲା ଅନିନ୍ଦା । ଦୁଃଖ ସବୁବେଳେ ରହେନା କି ସୁଖ ସବୁବେଳେ ଆସେନା । ଦୁଃଖପରେ ସୁଖ ନିଶ୍ଚୟ ଆସିବ- ଏତିକି ଥିଲା ଅନିନ୍ଦା- ମନର ସାନ୍ତ୍ୱନା ।

ଗୋଟାଏ ସହର, କେଉଁଠି ଜଳୁଛି ବିଜୁଳିବତୀ, କେଉଁଠି ଜଳୁଛି ତେଲ ଦୀପଟିଏ । ଜୀବନଟା ନଦୀର ଦୁଇ କୂଳ ପରି- କେବେ ଭଉଁରୀରେ ଏକପାଖ ଧକ୍କାଖାଇ ଆଘାତ

ପାଇ ଅତଡ଼ା ଖସି ପଡ଼େ ତ କେବେ ପୁଣି ଅନ୍ୟ ପାଖଟା ନିର୍ଜୀବ ସ୍ତମ୍ଭ ପରି ଠିଆ ହୋଇଥାଏ । ଏହୁହେଁ, ସେମିତି ଜୀବନର ଦୁଇଟି କୂଳ, ଜ୍ୟୋତି ଆଉ ଅନିନ୍ଦା ।

ଜ୍ୟୋତିର ମନରେ ଅଜସ୍ର ଦମ୍ଭ ଅନେକ ଆଶା ଦୁଃଖକୁ ସେ ଛାତି ଭିତରେ ଚପାଇ ଦେଇ ବାହାରେ ହସିପାରେ । ଦୁଃଖରେ ମଧ୍ୟ ସୁଖର ଅଭିନୟ କରିପାରେ । କିନ୍ତୁ ଏମିତି କରିପାରେ ନାହିଁ ଅନିନ୍ଦା । ତା'ର ସରଳ ନିଷ୍କପଟ ହୃଦୟରେ ଖାଲି ଭରିରହିଥାଏ ଅମାପ ସ୍ନେହ ଓ ମମତା- ମନଭିତରେ ଅହଂକାର ନାହିଁ, କି ଅଭିମାନ ନାହିଁ । କେତେଥର ଅନିନ୍ଦା ଜ୍ୟୋତିକୁ ଅନୁରୋଦ କରେ ଭାଇଭାଉଜଙ୍କ ଘରକୁ ଯିବାକୁ କିନ୍ତୁ ଜ୍ୟୋତି ଏଥିରେ ଏକମତ ନୁହେଁ । କାହିଁକି ? କାହାପାଇଁ ସେ ଯିବ ? ମାଣିକ ଭାଉଜ କ'ଣ ମଣିଷ ? ଯୋଉଁ ଭାଇ ତାକୁ ବିନା କାରଣରେ ଘରୁ ବାହାର କରି ଦେଇଛି ସେଠିକି ସିଏ କାହିଁକି ଯିବ ? ଅନିନ୍ଦା ଆଖିରୁ ଲୁହ ଝରି ପଡ଼େ, ତାକୁ ଦୁଃଖ ଲାଗେ ତା' ପାଇଁ ଆଜି ଦୁଇ ଭାଇରେ ମନୋମାଳିନ ଘଟିଛି । ସବୁପାଇଁ ସେ ହିଁ ଦାୟୀ । ଭାବେ ଦେଢ଼ଶୁରଙ୍କୁ କ୍ଷମା ମାଗିନେବ । ହେଲେ ସେ ସୁଯୋଗ ଜ୍ୟୋତି ତାକୁ କିଏ ଦିଏ ନାହିଁ । ମନକଥା ମନରେ ରଖି ଅନିନ୍ଦା ଚୁପ୍‌ରହେ ।

ସେଦିନ ସଞ୍ଜ ଗଡ଼ିଯାଇଥାଏ । ହଠାତ୍ ଝିଅଟିଏ ଆଉ ଜଣେ ସାଙ୍ଗକୁ ନେଇ ଆସି ପହଞ୍ଚିଲା । ପାଞ୍ଚବର୍ଷ ଭିତରେ ଜ୍ୟୋତିରଞ୍ଜନ କ'ଣ ତୁମକୁ ଭଲ ପାଇ ବାହାହୋଇଛନ୍ତି- କେଉଁଠି ତୁମର ପ୍ରଥମେ ତାଙ୍କ ସଂଗେ ଦେଖାହୋଇଥିଲା ?..... ଇତ୍ୟାଦି.....ଇତ୍ୟାଦି.... । କେତେକ ପ୍ରଶ୍ନର ଉତ୍ତର ନଥାଏ । ଅନିନ୍ଦା ଚୁପ୍ ରହେ । ଚାହା ଓ ଜଳଖିଆର ପର୍ବ ସରିଲା । ସେମାନେ ଉଠି ଠିଆହେଲେ ଯିବାକୁ । ସେତିକିବେଳେ ଅନିନ୍ଦା ତା'ର ନା ପଚାରି ରଖିବାକୁ ବୋଧହୁଏ ଚାହିଁବସିଥିଲା । ଶେଷରେ ଜଣାପଡ଼ିଲା ସେ ଶୁଭରଞ୍ଜନଙ୍କର ଲେଖାଯୋଖା ମଧୁର ସଂପର୍କୀୟା ରେବା । ନାଁ ଟା ତ ଭାରି ସୁନ୍ଦର ହେଲେ ସେ ବାରମ୍ବାର ଜ୍ୟୋତି ବିଷୟରେ ଏଣୁତେଣୁ ପଚାରୁଥିଲା କାହିଁକି ? କାରଣ କ'ଣ ? ଏଇ ରେବା ନାଁଟା ଅନିନ୍ଦା ଅନେକଦିନ ତଳେ କେଉଁଠି ପଢ଼ିଛି- ଠିକ୍ ମନେ ହେଉନାହିଁ । ମନ ଭିତରେ ସତେ ଯେମିତି ଗୋଟାଏ ଝାପ୍‌ସା ଅଂଧାର । ସେଇ ଅଂଧାର ଭିତରେ ସତେ ଯେମିତି ସବୁ ସ୍ମୃତି ହଜିଯାଇଛି ।

ଜ୍ୟୋତିରଞ୍ଜନ ଟୁର୍‌ରେ ବାହାକରୁ ଯାଇଥାନ୍ତି । ଅନିନ୍ଦାର ମନ ଭିତରେ ସନ୍ଦେହର କେମିତି ଗୋଟାଏ ଆସ୍ତରଣ ସୃଷ୍ଟି ହୋଇଛି । ସେ ରେବାକୁ ଦେଖିବା ପରଠାରୁ ଅନ୍ୟମନସ୍କ ।

ହଠାତ୍ ଆଲମିରା ଉପରେ ଥୁଆ ହୋଇଥିବା ଜ୍ୟୋତିର ଆଟାର୍ଚିଟିକୁ ଆଣି ଅନିନ୍ଦା ଖୋଲିଲା । କାଗଜପତ୍ର ଘଣ୍ଟାଘଣ୍ଟି କଲା । ଚିଠିଖଣ୍ଡେ ପାଇଲା । ଏଇ ଚିଠିଟି ବିଷୟରେ ସେ ଥରେ ଜ୍ୟୋତିକୁ ପଚାରିଥିଲା । ସେ ତାର ସଂପର୍କୀୟ ଭଉଣୀ ହେବ ବୋଲି ଜ୍ୟୋତି କହିଥିଲା ।

କେଜାଣି କାହିଁକି ଜ୍ୟୋତି ଉପରୁ ତା'ର ବିଶ୍ୱାସ ତୁଟି ଆସୁଛି । ତା'ମନ ବ୍ୟାକୁଳ ହୋଇଉଠୁଛି ।

ସେ ଯେ ଜ୍ୟୋତିକୁ ଭଲପାଇ ବାହାହୋଇଛି, ଆଜି ଏମିତି ଭାବୁଛି କାହିଁକି ? କାଗଜ ପତ୍ର ଖେଳାଉ ଖେଳାଉ ଆଟାର୍ଚି ଭିତରୁ ଫଟୋ ଖଣ୍ଡିଏ ବାହାରିଲା । ଅନିନ୍ଦା ଆଶ୍ଚର୍ଯ୍ୟ ହେଲା, ଏଇଟା ତ ରେବାର ଫଟୋ ! ତା'ହେଲେ ଫଟୋ, ଚିଠି-ସବୁ କ'ଣ ଜଣେ ସଂପର୍କୀୟ ଭଉଣୀର ?

ଆଟାର୍ଚି ଟା ଖୁବ୍ ପୁରୁଣା । ତା'ଭିତରେ ଜଣକର ଫଟୋଟା ଏମିତି ଦୀର୍ଘଦିନ ଧରି ସାଇତି ରଖିବାର ମାନେଟା କ'ଣ ହୋଇପାରେ ? ଅନିନ୍ଦା କିଛି ବୁଝି ପାରିଲାନି । ଧୀରେ ଧୀରେ ମନଭିତରେ ଅବିଶ୍ୱାସର ବୁଢ଼ିଆଣୀ ଜାଲ ମେଲିହୋଇଗଲା ଚାରିଆଡ଼କୁ ।

ସକାଳ ପାହିଲା । ଅନିନ୍ଦା ଜ୍ୟୋତିରଞ୍ଜନର ଅପେକ୍ଷାରେ ବ୍ୟସ୍ତ ଓ ଅଧୀର ହୋଇପଡ଼ିଥିଲା । ସେ ନିଶ୍ଚୟ ଜ୍ୟୋତିକୁ ପଚାରିବ- ଆଜି ପର୍ଯ୍ୟନ୍ତ ଏ ଫଟୋଟାକୁ ସେ କାହିଁକି ଲୁଚାଇ ରଥିଥିଲେ ? କହିନଥିଲେ କାହିଁକି ? କହିଥିଲେ, କ'ଣ ବା କ୍ଷତି ହୋଇଯାଇଥାନ୍ତା ?

ବାହାରେ କଲିଂବେଲ ବାଜିଲା । ଅନିନ୍ଦା କବାଟ ଖୋଲିଲା । ଜ୍ୟୋତିଙ୍କର ସେଇ ସବୁଦିନିଆ ହସହସ ମୁହଁ । ଦୁଇବାହୁ ଭିତରେ ଚାପିଧରିଲେ ଅନିନ୍ଦାକୁ ସବୁଦିନ ପରି । ଅନିନ୍ଦା କିନ୍ତୁ ନିରବ । ଜ୍ୟୋତିଙ୍କ ଆଲିଙ୍ଗନ ତା'ଉପରେ କିଛି ପ୍ରଭାବ ପକାଇଲା ନାହିଁ ।

ଭିତରକୁ ଯାଇ ଚାହା ଦି'କପ୍ ଧରି ଅନିନ୍ଦା ଆସି ଡ୍ରଇଂରୁମ୍‌ରେ ବସିଲା । ଦିହେଁ ଚା' ପିଇଲେ ସବୁଦିନପରି ଜ୍ୟୋତି ଏଣ୍ଡୁ ତେଣୁ ଗପ ଆରମ୍ଭ କରିଦେଲେ । କିନ୍ତୁ ଅନିନ୍ଦା ସତେ ନିର୍ବାକ୍ ପ୍ରତିମୂର୍ତ୍ତିଟିଏ । ଚୁପ୍‌ଚାପ ସବୁ ଶୁଣିଯାଉଥିଲା କେବଳ ।

ଏଥର ଜ୍ୟୋତି ପଚାରିଲେ "ତୁମେ ଏମିତି ଚୁପ୍‌ଚାପ୍ କାହିଁକି ? କ'ଣ ହେଇଛି ତୁମର ? କିଛି କହୁନାହଁ ଯେ ?- ଏତିକି କହି ଜ୍ୟୋତି ଅନିନ୍ଦାକୁ କୋଳକୁ ଟାଣି ଆଣିଲେ ।

ଏବେ ଅନିନ୍ଦା ଆଖିରେ ଆଖିଏ ଲୁହ ଭରିଗଲା । ଟପ୍ ଟପ୍ ଖସି ପଡ଼ିଲା ଗୋଲାପୀ ଗାଲ ଉପରକୁ । ସେ ଜ୍ୟୋତିଙ୍କୁ ମନ ଖୋଲି ସବୁ କହି ପକାଇଲା ।

ସବୁଶୁଣି ଜ୍ୟୋତି କହିଲେ "ଓ...... ତୁମେ ତା'ହେଲେ ରାଗିଛନା ମୋ ଉପରକୁ" ? ଜ୍ୟୋତି ଅନିନ୍ଦା ହାତକୁ ଭିଡ଼ିଧରି କହିଲେ- ଆଚ୍ଛା, ସତ କହିଲେ କ୍ଷମା ଦେବ ତ ? ତଳକୁ ମୁହଁପୋତି ଅନିନ୍ଦା କହିଲା "ହଁ" ।

"ସେଦିନ ଥିଲା ଉଆଁସ ରାତି । ମନପ୍ରାଣ ଦେଇ ଭଲପାଇଥିଲି ମୁଁ ରେବାକୁ । ପ୍ରଥମ ଦେଖା ହୋଇଥିଲା, ଜାଗର ଅମାବାସ୍ୟାରେ, କାର୍ତ୍ତିକେଶ୍ୱର ମନ୍ଦିର ବେଢ଼ାରେ । କେବେ ସାଗର କୂଳରେ କେବେ ଘଞ୍ଚ ଝାଉବଣର ଛାଇତଳେ ବସି ଆମେ ଦୁହେଁ ଗପ ହେଉଥିଲୁ । ମନର ମିଳନ ଆମ ଦୁହିଁଙ୍କୁ ଅନେକ ଦୂରକୁ ବହି ନେଇଥିଲା ।

ଏ ଦୁନିଆଟା ଆମ ପାଇଁ ଖେଳ ଘର ଥିଲା । ରେବା ସହିତ ଅବାଧ ମିଳାମିଶା କରିବା ପାଇଁ ଭାଉଜ ମତେ ସୁଯୋଗ ଦେଉଥିଲେ । ତେଣୁ ମିଶିବାରେ କୌଣସି ଅସୁବିଧା ନଥିଲା ।

ଆମ ବାହାଘର ଖୁବ୍ ଦିନଥାଏ । ଦିନେ ଆମେ ପାର୍କରେ ବସିଥାଉ । ହଠାତ୍ ପ୍ରବୀଣ ଆସି ସେଠାରେ ପହଞ୍ଚିଲା । ଯଦିଓ ପ୍ରବୀଣକୁ ମୁଁ କିଛିଟା ଚିହ୍ନେ, ଜାଣେ ତଥାପି ସେ ମତେ ନଦେଖିଲା ପରି ରେବାକୁ ପାର୍କ ଗେଟ୍ ପାଖକୁ ଡାକି କ'ଣ ସବୁ କଥାବାର୍ତ୍ତା ହୋଇ ଫେରିଗଲା ।

ମୁଁ ସେ ବିଷୟରେ ରେବାକୁ କିଛିହେଲେ ପଚାରିବାକୁ ଇଚ୍ଛା କରିନାହିଁ । ରେବା ଗେଟ୍ ପାଖକୁ ଫେରିବା ପରେ ଆମେ ଦୁହେଁ ପୁଣି ଗପସପ ହେଲୁ ଏବଂ ରାତି ହେବାରୁ ମୁଁ ରେବାକୁ ନେଇ ତାଙ୍କ ଘର ପାଖେ ଛାଡ଼ି ଆସିଲି ।

କିନ୍ତୁ ସେହିଦିନୁ ରେବା ଉପରେ ମୋର ସନ୍ଦେହ ହେଲା । ସୁବିଧା ସୁଯୋଗ ଖୋଜୁଥିଲି । ଦିନେ ରେବାର ଭ୍ୟାନିଟ୍ ବ୍ୟାଗରୁ ପ୍ରବୀଣର ଖଣ୍ଡେ ଚିଠି ଓ ଗୋଟିଏ ଫଟୋ ମିଳିଲା । ତୁମେ ଯେମିତି ଆଜି ମୋ ଆଟାର୍ଚିରୁ ଚିଠି ଓ ଫଟୋ ପାଇ ମନ କଷ୍ଟ କଲ, ସେମିତି ମୁଁ ଖୁବ୍ ଆଘାତ ପାଇଥିଲି ସେଦିନ ।

ପ୍ରବୀଣ ଚିଠିରେ ଅବଶ୍ୟ ଖରାପ ଭାବିବା ଭଳି ସେମିତି କିଛି ଲେଖା ନଥିଲା । ସନ୍ଦେହ କରିବା ପରି କିଛି ବିଷୟ ବସ୍ତୁ ମଧ୍ୟ ନଥିଲା । କିନ୍ତୁ କେଜାଣି କାହିଁକି ମୋର

ପୁରୁଷ ମନଟା ବିଷେଇ ଉଠିଲା । ରେବା ପ୍ରତି ଘୃଣା ଓ ଅଭିମାନରେ ମନଟା ତିକ୍ତ ହୋଇ ଉଠିଲା । ସେହି ଦିନଠାରୁ ରେବାକୁ ଆଉ ଦେଖା କଲିନାହିଁ ।

ମୋ ସଂଗେ ଭେଟିବା ପାଇଁ ସେ ବ୍ୟାକୁଳ ହୋଇ ଉଠିଲା । ଅନେକ ଚିଠି, ଅନେକ ଖବର ପଠାଇଲା ସତ କିନ୍ତୁ ସେ ସୁଯୋଗ ମୁଁ ତାକୁ ଆଉ ମୋଟ ଉପରେ ଦେଲିନାହିଁ ।

ହଠାତ୍ ଦିନେ ତା'ସହିତ ଦେଖା ହୋଇଗଲା । ସେ ମୋ ପାଖକୁ ଧାଇଁଆସି ମୋର ଏପରି ଉଦାସୀନତା କାରଣ ପଚାରିଲା । ମୁଁ ସାମାନ୍ୟ ହସି ଅପରାଧୀ ଶିଶୁଟି ପରି ତଳକୁ ମୁହଁକରି ଠିଆହେଲି, କୌଣସି ଉତ୍ତର ନପାଇ ସେ ଲୁହ ଛଳଛଳ ଆଖିରେ ଫେରିଗଲା ।

ମୁଁ ରେବାକୁ ବିବାହ କରିବାର ସ୍ୱପ୍ନ ଆଉ ଜୀବନରେ କେବିବି ଦେଖିନି ।'' ଏତିକି କହି ସତୃଷ୍ଣ ନୟନରେ ଅନିନ୍ଦାକୁ ଚାହିଁ ରହିଲେ ଜ୍ୟୋତିରଞ୍ଜନ, ସତେ ଯେମିତି ତାଙ୍କ ଅପରାଧର ଦଣ୍ଡ ଶୁଣାଇଁବା ପାଇଁ ଅନିନ୍ଦା ଆଜି ବିଚାରପତି ।

ଅନିନ୍ଦା ହସିହସି ଜ୍ୟୋତିରଞ୍ଜନ ଛାତି ଉପରେ ଆଉଜି ପଡ଼ି କହିଲା ''ତୁମେ ପୁରୁଷମାନେ କିନ୍ତୁ ଭାରି ଅବିଶ୍ୱାସୀ । ଏମିତି ଖଣ୍ଡେ ଚିଠି ଆଉ ଗୋଟାଏ ଫଟୋ ଯଦି ତୁମେ ମୋ ଆଟାଚି କିମ୍ବା ଭ୍ୟାନିଟ୍ ବ୍ୟାଗ୍‌ରୁ ପାଇଥାନ୍ତ ତେବେତ ସେଇୟା କରିଥାନ୍ତ ?''

ଜ୍ୟୋତିରଞ୍ଜନ କହିଲେ ''ନା, ନା ପୁରୁଷ ଅବିଶ୍ୱାସୀ ନୁହେଁ, ସେ ଖୁବ୍ ସରଳ ଓ ନିଷ୍କପଟ । ସେଇଥିପାଇଁ ଏତେ ସହଜରେ ଛଳନାମୟୀ ନାରୀର ସେ ଶିକାର ହୋଇଯାଏ ।

ମେଘୁଆ ଆକାଶରେ ଭସାଣିଆ ବାଦଲ ସବୁ ଠେଲାପେଲା ହୋଇ ଆଗକୁ ଚାଲିଛନ୍ତି । ଝରକା ଫାଙ୍କରେ ବରଫ ରଙ୍ଗର ସେଇ ବାଦଲ ଆଡ଼େ ଚାହିଁ ରହିଥିଲା ଅନିନ୍ଦା । ତା'ରି ଭିତରେ ଜହ୍ନ ଖିଲ୍‌ଖିଲ୍ ହୋଇ ହସୁଥିଲା । ସତେ ଯେମିତି ସେ କହୁଥିଲା- ''ଅତୀତ କେବେଠୁ ହଜିଗଲାଣି । ସେଇ ଭଙ୍ଗାରୁଜା ସ୍ମୃତିକୁ ନେଇ ବର୍ତ୍ତମାନର ସୁଖ ଶାନ୍ତିକୁ କାହିଁକି ଜାଳିପୋଡ଼ି ପାଉଁଶ କରୁଛ ?''

ଅନିନ୍ଦା ଜ୍ୟୋତିଙ୍କର ଖୁବ୍ ନିକଟକୁ ଲାଗିଆସିଲା । ଜ୍ୟୋତି ବେଡ୍ ଲାଇଟ୍ ଲିଭାଇଲେ ।

○●○

# ଛଡ଼ା ଫୁଲ

ଠିକ୍ ଦିନ ଦଶଟା । ସବୁଦିନ ପରି ସେଇ ନିର୍ଜ୍ଜିବ ସାଇକେଲ ଚକ ଦୁଇଟା ଗଡ଼ିଗଡ଼ି ଆସି ଠିଆ ହେଲା ବନାନୀ ଘର ସାମ୍ନାରେ । ପ୍ରତିଦିନର ସେଇ ପୁରୁଣା ଆରୋହୀ ବସୁ । କବାଟ ଖୋଲାହେଲା । ବସୁ ଘର ଭିତରକୁ ପଶି ଯାଉଥିଲାବେଳେ ପଛରୁ ରମୁ ଡାକିଲା- ବସୁଭାଇ ! ଆଜି କ'ଣ ଅଫିସ୍ ଛୁଟି ?.....

ପଛକୁ ବୁଲିପଡ଼ି ବସୁ ଟିକିଏ ହସିଦେଲା । ପ୍ରତି ହସଟିଏ ଓଠରେ ଆଙ୍କି ଦେଇ ରମୁ ତଳ ରାସ୍ତା ଦେଇ ସାଇକେଲ ଗଡ଼ାଇ ଚାଲିଗଲା । ସେ ଜାଣେ ପ୍ରତିଦିନ ବସୁ ଏଠିକୁ ଆସେ । ରମୁ ଅନେକ ସମୟରେ ବସୁ କଥା ଭାବି ଆଶ୍ଚର୍ଯ୍ୟ ହୁଏ । ବେଳେବେଳେ ବସୁଉପରେ ରାଗେ, ପୁଣି କେବେକେବେ ବସୁପ୍ରତି ତା'ର ଦୟା ଆସେ ।

ବନାନୀର ଗୋଲାପୀ ଓଠରେ ହସର ଢେଉ । ବସୁ ଏକଲୟରେ ଚାହିଁଥାଏ ବନାନୀକୁ । ଏଇ ଚାହିଁବାରେ ତା'ର ଆତ୍ମତୃପ୍ତି, ତା'ର ଆନନ୍ଦ । ମନଖୋଲି ବନାନୀକୁ ଅନେକ କଥା କହିଛି କିନ୍ତୁ ବନାନୀ ସବୁଶୁଣି କିଛି ମଧ ପ୍ରତ୍ୟୁତ୍ତର ଦେଇନାହିଁ । ବସୁ ଖାଲି ପ୍ରତ୍ୟୁତ୍ତର ନୁହେଁ, କିଛିବି ପାଇନି ବନାନୀଠାରୁ । ମନରେ ନିଆଁ ମନ ଭିତରେ ଜଳି ଜଳି ପାଉଁଶ ହେଉଛି ।

ଆଗାମୀ ସକାଳର ସୂର୍ଯ୍ୟ କିରଣରେ ଦିନଗଡ଼ି ଯାଉଛି । କିନ୍ତୁ ଅତୀତ ଦିନକୁ ବସୁ ସାଇତି ରଖିଛି ଛାତିଭିତରେ, ସୁନାଫରୁଆର ଭଅଁରପରି । ଭୁଲି ପାରୁନି । ଦୁଇଟି ବର୍ଷ ମାତ୍ର ବିତି ଯାଇଛି, ଯେତେବେଳେ ସେ ଦୁହେଁ ଆକାଶର ପକ୍ଷୀ ପରି ଘୁରି ବୁଲୁଥିଲେ ସଂପୂର୍ଣ୍ଣ ସ୍ୱାଧୀନତାର ଛାଇତଳେ । ସେତେବେଳେ ସମାଜର ଆପତ୍ତି ନଥିଲା, ଅଭିଯୋଗ ନଥିଲା । ଖାଲି ସମାଜ କାହିଁକି ? ବନାନୀର ବାପା ମା କେହି ହେଲେ ବାଧା ଦେଉନଥିଲେ ସେ ଦୁହିଁଙ୍କୁ ।

ବନାନୀ ଅନେକ ଭାବିଛି । ସେଦିନର ମିଠା ମହକରେ ଏବେ ମଧ ସେ ପୁଲକିତ ହୋଇଉଠିଛି ବେଳେବେଳେ । ତା'ର ମନେ ଅଛି, ସହରସାରା ଦୁଇ ଜଣଙ୍କ ସ୍ନେହ ପ୍ରୀତିର ଚିହ୍ନ କାନ୍ଥ ବାଡ଼ରେ ଫୁଟି ଉଠିଥିଲା ।

ବନାନୀ ବାପା ସମାଜ ଭୟରେ ବାଧ ହୋଇ ଜ୍ୟୋତିଷ ଡାକି ଜାତକ ଦେଖାଇଥିଲେ । ଦୁର୍ଭାଗ୍ୟ ! ବସ୍ତୁ କୁ ବାହାହେଲେ ବନାନୀ ବୈଧବ ଯନ୍ତ୍ରଣାର ଶିକାର ହେବ- ଏକଥା କୋଉ ବାପା ମା ଚାହିଁବେ ? ଏଇଥି ପାଇଁ ବସ୍ତୁ ମଧ ବନାନୀ ଠାରୁ ଦୂରେଇ ଯାଇଥିଲା । ତା'ନିଜ ସ୍ୱାର୍ଥ ପାଇଁ ନୁହେଁ, ବନାନୀର ଭବିଷ୍ୟତ ପାଇଁ ।

ବସ୍ତୁକୁ ଯେଉଁ କନ୍ୟା ବିବାହ କରିବ, ସେ ହେବ ଗୋଟିଏ ବର୍ଷ ଭିତରେ ବିଧବା । ମନେ ମନେ ବସ୍ତୁ ଭାବିଥିଲା, ଆଉ କେହି ବିଧବା ହେଉପଛେ, ବନାନୀକୁ ଏକଷ୍ଟ ସହିବାକୁ ସେ ଦେବନି । ତେଣୁ ଦୁଇଜଣଙ୍କ ବିବାହ ଭିନ୍ନ ଭିନ୍ନ ଜାଗାରେ ହୋଇଯାଇଛି । ଅତିତକୁ ଭୁଲିଯିବା ଯଦିଓ ଏତେ କଷ୍ଟ ସାଧ ନଥିଲା, କିନ୍ତୁ ତା'ଜୀବନର ପ୍ରଧାନ ଦୁଃଖ ଥିଲା ତା'ସ୍ତ୍ରୀ ସଲୀଳା । ଉଦ୍ଧତ, ଅସଙ୍ଗତ ଏବଂ ଅଶିକ୍ଷିତ ସଲୀଳାକୁ ବିବାହ କରି ସେ ଅତୀତକୁ ଭୁଲିଯିବାର ଆଉ ବାଟ ପାଇନଥିଲା । ବର୍ତ୍ତମାନର ଦୁଃଖର ସନ୍ଧୁଥିବା ମଣିଷଟି ଅତୀତକୁ ହିଁ ଝୁରୁଥାଏ ।

ସଲୀଳା ଥିଲା ଜିଦ୍‌ଖୋର୍ । ଯାହା ଚାହୁଁଥିଲା ତାହାହିଁ କରୁଥିଲା । ପଡ଼ୋଶୀ ଘରର ଯେମିତି ସୋଫା, ଯେମିତି ଡ୍ରେସିଂ ଟେବୁଲ, ଠିକ୍ ତା'ର ସେମିତି ଲୋଡ଼ା । ପ୍ରତି ମାସରେ ନୂଆ ଶାଢ଼ୀ, ନୂଆ ଗହଣାର ଲୋଭ ତା'ର ସମସ୍ତ ବ୍ୟକ୍ତିତ୍ୱକୁ ଯେପରି ନଷ୍ଟ କରିଦେଇଛି ।

ବସ୍ତୁଭାବେ ବିବାହ କରି ସେ ଭୁଲ କରିଛି । ସ୍ତ୍ରୀର କଦର୍ଯ୍ୟ ସଂସ୍କୃତି ସଂଗେ ସେ ତା' ଜୀବନକୁ ଖାପ ଖୁଆଇ ପାରେନି । ପାରିବାରିକ ଜୀବନ ଜୀର୍ଣ୍ଣଶୀର୍ଣ୍ଣ ହୋଇଉଠେ । କାହାରିକୁ ବସ୍ତୁ କିଛି କହି ପାରେନା । ମନେ ମନେ ନିଜ ଉପରେ ଅଭିମାନ କରେ । ମନ ତା'ର ଅଧାପୋଡ଼ା ଅଙ୍ଗାର ହୋଇରହିଯାଏ । ଆଖିରୁ ଲୁହଝରି ଆସେ ।

ମନ ଭିତରେ ବନାନୀ ହସି ହସି ଆସି ଠିଆହୁଏ । ପୁଣି ନୀଳରଙ୍ଗର ଲଫାପା ଗୁଡ଼ାକ ଆସି ଗଦା ହୋଇଯାନ୍ତି ବସ୍ତୁର ଟେବୁଲ୍ ଉପରେ କାଲିଥିଲା ବନାନୀ ବସ୍ତୁର ଆଜି ସେ ସାତପର ।

ବନାନୀର ମନ, ପ୍ରାଣ-ସବୁ କିଛି ଅର୍ପିତ କେବଳ ଜୟନ୍ତ ପାଇଁ । ତା'ପାଇଁ ସେ କରେ ଅନେକ ଚିନ୍ତା, ଅନେକ ଓଷାବାର, କେତେପୂଜା, କେତେଜଣାଣ ଠାକୁରଙ୍କ ପାଇଁ । ସତରେ ବନାନୀ ମାନବୀ ନୁହେଁ, ଦେବୀଟିଏ । ଜୟନ୍ତ ସଂଗେ ତାର ବର୍ଷକୁ ମାତ୍ର କେଇଦରଟି ଦିନ । ତା'ପରେ ବର୍ଷ ଭିତରେ ଆଉ କେବେ ଆସେନା ସେ ବସନ୍ତ । ବନାନୀ ଅପେକ୍ଷା କରେ, ପୁଣି ଆସନ୍ତା ବର୍ଷ ପାଇଁ ।

ସବୁଦିନ ବସୁ ବନାନୀ ପାଖକୁ ଆସେ ତାକୁ ଦେଖେ । ମନେ ମନେ ଭାବେ, ଏଇ କ'ଣ ଅନେକ ଦିନ ତଳର ସେଇ ବନାନୀ ? ଯିଏ ତାକୁ ମନ ପ୍ରାଣ ସବୁ କିଛି ଦେଇ ଭଲ ପାଇଥିଲା ? ଆଜି କ'ଣ ସେ ପଥର ! ସ୍ନେହଦିଏ, ସହାନୁଭୂତି ଦେଖାଏ, ଭଲପାଏ, ଜଳଖିଆ ଆଣି ପରଷିଦିଏ ଅଥଚ - ମନଖୋଲି ପଦେ କଥା କହେନା କାହିଁକି ? କାରଣ କ'ଣ ?

ମନର ପୁରୁଷତ୍ୱ ଜାଗିଉଠେ । ବସୁ ଭାବେ ଏତେ ବର୍ଷହେଲା ସେ ସଲୀଳାକୁ ବିବାହ କଲାଣି । ସଲୀଳାତ ବିଧବା ହୋଇନାହିଁ ? ତେବେ ଜାତକର ଏ ଅଂଧ ବିଶ୍ୱାସକୁ କାହିଁକି ସମାଜ ଗ୍ରହଣ କରେ ?

ପ୍ରତିଦିନ ବନାନୀ ପାଖରୁ ବସୁ ନିରାଶାରେ ଫେରେ । ସେ ଜାଣେ ବନାନୀ ବିବାହିତ, ତା'ଠାରୁ କିଛି ଆଶା କରିବା ଭୁଲ୍ । ଏକବାର ଭୁଲ୍ କିନ୍ତୁ ମଣିଷର ମନ ! ତାକୁ ବୁଝାଇବ କିଏ ? ବନାନୀକୁ ଦେଖିବାର ବସୁ ଯେଉଁ ଆନନ୍ଦ ପାଏ ତା' ସେ କେଉଁଠୁ ପାଇବ ଆଉ ? ସମୟ ଗଡ଼ିଚାଲେ । ବସୁର ଘଞ୍ଚକଳା ବାଳ ଭିତରେ ଏବେ ଧଳାବାଳ କେତେଟା ମୁରୁକି ମୁରୁକି ହସିବାକୁ ଆରମ୍ଭ କଲେଣି । କାନଛୁଁଫୁସ୍‌ଫୁସ୍ ହୋଇ କହିଲେଣି କେତେଥର- ''ଏବେ ଯୌବନତ ହଜି ଯିବାକୁ ବସିଲାଣି, ଆଉ ଅତୀତକୁ ଖୋଜୁଛ କାହିଁକି ?''

ବସୁର ମନ ମାନେନା, ଏତେ ଶୀଘ୍ର ସେ ଯୌବନକୁ ହଜାଇ ଦେବନି । ଖୋଜିବ, ଜୀବନସାରା ତାକୁ ଖୋଜୁଥିବ । କାରଣ ତା'ଅନ୍ତରାତ୍ମା ଏବେ ବି ଖୋଜୁଛି ବନାନୀକୁ, ତା'ର ମମତାକୁ ସମୟ ବଦଳିଗଲେ ବି ମନ ତାର ବଦଳି ପାରିନି । ସ୍ମୃତି ଗୁଡ଼ାକୁ ପାଶୋରି ପାରିନି ସିଏ । ହନ୍ତସନ୍ତ ଜୀବନରେ ସେ ଶାନ୍ତି ଖୋଜି ବୁଲୁଛି ।

ବନାନୀ ଆଜି ନିରବ । ଯୌବନର ଢେଉ ଅନେକଥର ମଥା ପିଟିଥିଲା ତା' ଦେହରେ ତା ମନରେ । ଆଜି ଆଉ ସେଦିନ ତାକୁ ବ୍ୟାକୁଳ କରୁନି । ତା'ର ମନେ ଅଛି, ଯେଉଁଦିନ ବସୁ ତାକୁ କହିଥିଲା- ''ତୁମେ ମତେ ଠକି ଦେଲ ବନାନୀ'' । ସେଦିନ ବନାନୀ ତଳକୁ ମୁହଁପୋତି ଠିଆ ହୋଇଥିଲା ।

ବସୁ ପୁରୁଷ, ସେ ବୁଝି ପାରିନଥିଲା, ନାରୀର ସଂସ୍କୃତି ନାରୀର ପରଂପରା, ନାରୀର ଧର୍ମ ଆଉ ଚିନ୍ତାଧାରା । ବନାନୀ କ'ଣ ଚାହିଁ ନଥିଲା ବସୁକୁ ? କିନ୍ତୁ କାହିଁକି କେଜାଣି, ସେ ସବୁ ସ୍ମୃତି ଆଜି ମନ ଭିତରେ ଅଳସୁଆ ହୋଇ ଶୋଇ ପଡ଼ିଲେଣି ।

ବନାନୀ ଜାଣେ ବସ୍ତୁର ଛାତି ଫାଟି ଯାଉଛି । ସେ ତାକୁ ଏବେ ବି ଭଲପାଏ । କିନ୍ତୁ ବନାନୀକୁ ଲୋକେ କହିବେ କ'ଣ ? ମନ ହୁଏ ଛୋଟ ପିଲାଟି ପରି ବସ୍ତୁକୁ ଛାତିରେ ଆଉଜାଇ ଆଣି ବନାନୀ ବୁଝାଇଦିଅନ୍ତା । କିନ୍ତୁ ସେ ଏମିତି କେମିତି କରିବ ? ବସ୍ତୁପାଇଁ ବନାନୀ ଆଉ କିଛି ହେଲେ କରି ପାରିବନି । ଖାଲି ଜୀଅନ୍ତା ଶବ ହୋଇ ବଂଚି ରହିବ ଜୀବନରେ ।

ବସ୍ତୁକୁ ଘରକୁ ଆସିବାକୁ ସେ ମନା କରିଦେବ - ଅନେକ ଥର ଭାବିଛି - କିନ୍ତୁ ପାରିନି । ପାରିବ୍‌ନି ମଧ୍ୟ । କାହିଁକି ବା ମନା କରିବ ? କ'ଣ ସମାଜ ଭୟରେ ? ଯେଉଁ ସମାଜର ନିୟମମାନି ସେମାନେ ଆଜି ପରସ୍ପର ଠାରୁ ଭିନ୍ନ, ସେ ସମାଜ ତାଙ୍କୁ କଣ ଦେଇଛି ?

ସେଦିନ ଧୂଆଁଳିଆ ଆକାଶ । ବାଦଲଗୁଡ଼ା ଆକାଶ ଦେହରେ ଭାସି ବୁଲୁଛନ୍ତି ଦଳଦଳ ହୋଇ । ବନାନୀ ଚାହିଁ ରହିଛି ଝରକା ବାହାରକୁ ।

ଚାରିଦିନ ତଳେ ଜୟନ୍ତର ଚିଠି ପାଇଛି । ସେ ଆଜିଆସି ପହଞ୍ଚିବେ । ଜୟନ୍ତ ତାକୁ ଖୁବ୍ ଭଲପାଏ । ସ୍ୱାମୀ ଭାବରେ ତା'କୁ ତ ଦୋଷ ଦେବାର କୌଣସି ବାଟ ନାହିଁ । ଉଦାର, ସହିଷ୍ଣୁ, ସ୍ନେହୀ ।

ଜୟନ୍ତକୁ ପ୍ରମୋଶନ ମିଳିଛି । ସେ ବର୍ତ୍ତମାନ ଜଳ ଜାହାଜର କ୍ୟାପ୍‌ଟେନ୍ । ବନାନୀକୁ ନେଇ ଯିବା ପାଇଁ ସେ ଆସୁଛନ୍ତି । ବନାନୀର ଛାତି ଭିତରେ କେମିତି ଗୋଟାଏ ଅସ୍ୱାଭାବିକ ଯନ୍ତ୍ରଣା । ତା ସଂଗେ ସଂଗେ ଆନନ୍ଦର ଝରଣା ବହିଯାଉଛି ଦୁଇ ଆଖିକୋଣରୁ ।

କାଲିଭୋରୁ ଏ ଘର ଛାଡ଼ି ଯିବାକୁ ପଡ଼ିବ । ଏଠି ସକାଳର ସୂର୍ଯ୍ୟ ସହ ହୁଏତ ଦେଖା ହୋଇ ପାରିବ୍‌ନି । ଏଘରର ମାୟା, ଆଜି କାଲିର ନୁହେଁ, ପନ୍ଦର ବର୍ଷର । ଭୁଲିବ କେମିତି ? ଭୁଲିଯିବ ସବୁ ସ୍ମୃତିକୁ କେମିତି ? ସେ ଭାବି ପାରିଲାନି ।

ବନାନୀ ବସ୍ତୁକୁ ଜୀବନରେ କିଛି ଦେଇ ପାରିନି । ଦେଇଛି କେବଳ ପଦାଘାତ, ପ୍ରତାରଣା । ବାଧ୍ୟହୋଇ, ସମାଜ ପାଇଁ ଲୋକଧର୍ମ ପାଇଁ ସବୁଦିନ ସେ ଆସେ ଆଶାର ଝୁଲି ନେଇ । ନିରାଶରେ ପୁଣି ଫେରିଯାଏ ଏଇଥିଲା ବନାନୀ ଜୀବନର ନିତି ଦିନର କାହାଣୀ ।

x x x x x

ସକାଳର ସୂର୍ଯ୍ୟ ହସି ଉଠିଲେଣି । ରଙ୍ଗୀନ ତୂଳୀରେ ଲେଖି ଦେଲେଣି ପୃଥିବୀ ପୃଷ୍ଠରେ ଅନେକ ଚିତ୍ର ! ପାହାଡ଼, ବନ, ନଦୀ ଓ ଝରଣାରେ, ସୁନେଲୀ କିରଣ ବିଛାଡ଼ି ହୋଇ ପଡ଼ିଲାଣି । ବଉଳ ଫୁଲର ବାସ୍ନାରେ ମହକି ଗଲାଣି ମଳୟର ଦେହ ।

ଠିକ୍ ଦିନ ଦଶଟା । ସବୁଦିନ ପରି ସେଇ ପୁରୁଣା ସାଇକେଲଟା ଆସି ଠିଆହେଲା ବନାନୀ ଘର ସାମ୍ନାରେ । ବସୁ ଆଶ୍ଚର୍ଯ୍ୟ ହେଲା । ମସ୍ତବଡ଼ ତାଲା ଝୁଲୁଛି କବାଟରେ । ତେବେ ବନାନୀ ? ତାଲାଟା ସତେ ବସୁକୁ ଚାହିଁ ଉପହାସର ହସ ହସୁଛି । ବସୁର ଆଖିରୁ ଦି'ଧାର ଲୁହ ଗଡ଼ିପଡ଼ିଲା । ମନକୁ ସଞ୍ଚତ କରି, ଛାତିରେ ପଥର ଲଦି ସେ ସାଇକେଲ୍ ଫେରାଇଲା ଘର ମୁହାଁ ହୋଇ ।

ଅଳ୍ପ କିଛି ବାଟ ଆଗକୁ ଯାଇଛି, ବସୁ ଦେଖିଲା ଆମ୍ବତୋଟା ଆଡୁ ଖଣ୍ଡେ କାଗଜ ଧରି ସାରଙ୍ଗ ଧାଇଁଛି । ବନାନୀ ଘରେ ପାଣିଦିଏ ସେ ପିଲାଟା । କାନ୍ଦି କାନ୍ଦି ବସୁ ହାତକୁ କାଗଜ ଖଣ୍ଡିକ ବଢ଼ାଇ ଦେଇ କହିଲା- ''ବନାନୀ ଦିଦି ଦେଇଛନ୍ତି ।''

କାଗଜ ଖଣ୍ଡିକ ଖୋଲି ବସୁ ପଢ଼ିଲା- ''ଗୋଟିଏ ଦେବତାକୁ ଯେଉଁ ଫୁଲ ଦେଇ ପୂଜା କରାଯାଏ, ସେଇଫୁଲରେ ଆଉ ଗୋଟିଏ ଦେବତାର ପୂଜା ହୁଏନାହିଁ'' - ''ଇତି, ବାନାନୀ'' ।

ବସୁର ଛାତି ଲୁହରେ ଭିଜିଗଲା । ତା'ର ସାଇକେଲ ଚକା ଦୁଇଟି ସବୁଦିନ ପାଇଁ ପଛକୁ ଫେରିଲା । ସାରଙ୍ଗ ଆମ୍ବଗଛ ମୂଳେ ବସି ବସୁର ଚଲାପଥକୁ, ପଛରୁ ଚାହିଁ ରହିଥିଲା ।

୦●୦